# ଓଷଧନୀ



ଶ୍ରୀ ନରସିଂହ ଦେଓ

# ବେଦନା

## ମାତୃ ସେବା କିତାବ୍ ମାଳା
### ୨ୟ ଖଣ୍ଡ

The fin· ness of the possible art is an index of the moral purity and majesty
of the emotion it express.

—Ruskin—

ପୃଷ୍ଠପୋଷକ—ଶ୍ରୀ ଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ
ରାଜା ସାହେବ—ବଣେଇ

ଲେଖକ—ନରସିଂହ ଦେଓ

ମୂଲ୍ୟ ଆଠଅଣା ମାତ୍ର



# ଉତ୍ସର୍ଗ

ସଂପ୍ରତ୍ୟ ଭଲାଙ୍ଗୁର

ସ୍ୱନାମଧନ୍ୟ କ୍ରୀଡ଼ାପ୍ରମାନ ତରୁଣ ରାଜା

ଶ୍ରୀ ଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ ସତେନ୍ଦ୍ର ଦେବ

ମହୋଦୟଙ୍କର

କରକମଳେଷୁ—

—ଲେଖକ—

# କଥା ପଦଏ

'ବେଦନା' ବେଳେ ଗୁଚ୍ଛଏ ପଦ୍ୟ ରସାତ୍ମକ କବିତାର ସମଷ୍ଟି ମାତ୍ର । ଉତ୍କଳରେ ଏ ଧରଣ କବିତା ବିରଳ ହେଲେ ମଧ୍ୟ ତରୁଣ ଜୀବନର ଯୌବନ ଉଚ୍ଛ୍ୱାସିତ ମନୋଭାବଧାରାର ଛବି ଛବି ଦିନ ଲେଖକ ଅଧୁନାତନ ଶାଣିତ ଲେଖନୀରେ ଦୁ ପଦ ଲେଖି ଯାଇଛନ୍ତି । ଏଥିର ତତ୍ତ୍ୱ ବିଚାର ଦେଶର ପାଠକ ପାଠିକାଙ୍କ ଉପରେହିଁ ନ୍ୟସ୍ତ ।

ଧନ୍ଦ୍ରଷ୍ଟା କବି ଦୃଷ୍ଟିରେ ଜଗତର ସମସ୍ତ ସାମଗ୍ରୀ କବିତାର ଆଧାର । ସେ କୃଷକ ପରି ମୃତ୍ତିକାସ୍ତୂପରୁ ସ୍ୱର୍ଣ୍ଣ ଉପୁଜାଇ ପାରେ, ପଲ୍ଲୀର ଜୀର୍ଣ୍ଣଶୀର୍ଣ୍ଣ କୁଟୀରରୁ [illegible] ଅଟ୍ଟାଳିକାର ଦରିଦ୍ର ନାରୀ କଳଙ୍କିତ ଗାଳି ଶୁଣି ଅମାନୁଷ ସଙ୍ଗୀତ ଶୁଣିପାରେ । ଜଡ଼ଶିଳ ଦେହରୁ ମଣିଷର ସଜୀବ ମୂର୍ତ୍ତି ଧାରେ ଧୂଳି ନିରଞ୍ଜନୀଳ ପଦପ ପରିଶୋଭିତ, ଧ୍ୱଂସକାରୀ ବିଳସିତ ଅରଣ୍ୟାନୀକୁ ସମ୍ରାଟ ମନ୍ଦିରରୁ ଶ୍ରେଷ୍ଠ ମନେ କରେ । ଏଣୁ ତା' ଆଗେ ମାନବ ଜୀବନର ସକଳ ଅବସ୍ଥା ମଧ୍ୟ କବିତ୍ୱ ଭରା । ସେ ଶିଶୁମୁଖ ନିର୍ଗତ ଦନ୍ତହୀନ ବଚନ ଓ ସଂସାର ଦୃଷ୍ଟାକ୍ରାନ୍ତ ପକ୍ୱକେଶରୁ ଯେପରି କବିତାର ଉପାଦାନ ସଂଗ୍ରହ କରେ ଯୌବନ ଉଚ୍ଛ୍ୱସିତ ତରୁଣ ଜୀବନରୁ ମଧ୍ୟ ସେହିପରି କବିତାର ସାମଗ୍ରୀ ଦେଖିବାକୁ ପାଏ । ଏହା ବୋଲି କବି ଓ କବିତାକୁ ଦୋଷ ଦେବା ଅଜ୍ଞତାର ପରିଚୟ ।

'ବେଦନା' ମୁଦ୍ରଣ ଭାର ସହୃଦୟ ସେବାବଶ ସମ୍ଭୂତ ଶକ୍ତିଙ୍କର ଉଦୀୟମାନ ତରୁଣ ନରପତି ଶ୍ରୀ ଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ ରାଜେନ୍ଦ୍ର ଦେବ ବହନ କରିଥିବା ହେତୁ ହୃଦୟର ଭକ୍ତି ପୁଷ୍ପାଞ୍ଜଳି ତାଙ୍କର ଚରଣ ତଳେ—ଅର୍ପଣ କରିବା ସଙ୍ଗେ ସଙ୍ଗେ ଗଭୀର କୃତଜ୍ଞତା ଜ୍ଞାପନ କରୁଛନ୍ତି ।

ତା ପରେ ଶକ୍ତି ହେଉଛନ୍ତି ଚିର ବୀରପ୍ରସବିନୀ । ଏହି ମାଟିରେ ଅନେକ କବି କୋବିଦ ଜନ୍ମ ହୋଇ ନିଜର ଜାତୀୟକୀର୍ତ୍ତି ପତାକା ସାରା ଦେଶରେ ଉଡ୍ଡୀୟମାନ କରି ଯାଇଛନ୍ତି । ସେଥି ମଧ୍ୟରୁ ଜାଲ ଲେଖକ ଦାମୋଦର ରାଜେନ୍ଦ୍ର, ନଳ ଓ ଉତ୍କଳର ଦ୍ୱିତୀୟ ନାଟକ 'ବଦଗୁମାଧବ' ଲେଖକ କିଶୋରଚନ୍ଦ୍ର ରାଜେନ୍ଦ୍ର, କାବ୍ୟ ଓ ନାଟକ ଲେଖକ ରାଧାମୋହନ ରାଜେନ୍ଦ୍ର, ଦେଶକର୍ମୀ ରାଜା ଗୌରଚନ୍ଦ୍ର, ଛନ୍ଦ ଲେଖକ ପୀତାମ୍ବର

ଭୂମଣ୍ଡଳର ଜନକ, ପ୍ରଥମ ଓଡ଼ିଆ ପ୍ରାଣିତତ୍ତ୍ୱ ଶିକ୍ଷାଦାର ବ୍ରଜନାଥ ଦାସ, ଅର୍ଥକାର ନରେନ୍ଦ୍ର ବସୁ, ସୁପଣ୍ଡିତ ଗୋବିନ୍ଦ ବସୁ, ପୁଣି ବୌଦ୍ଧ ଲେଖକ ନିତ୍ୟାନନ୍ଦ ଗିରଷଦାଙ୍କର ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କର ସ୍ମୃତି ରକ୍ଷା ହେଉଛି ଦେଶବାସୀଙ୍କର ଏକ କର୍ତ୍ତବ୍ୟ । ଏହାର ବ୍ୟତିକ୍ରମ ଘଟିଲେ ଅମ୍ଭେମାନେ ସେମାନଙ୍କର ଉତ୍ତରାଧିକାରୀ ବୋଲି ଯେପରି ଲଜ୍ଜାବୋଧ କରିବା, ସେମାନେ ମଧ୍ୟ ସ୍ୱର୍ଗରେ ଥାଇ ଆମମାନଙ୍କ ପରି ଅଯୋଗ୍ୟ କୁଳାଙ୍ଗାରଙ୍କୁ ପାଇ ନିଜକୁ ନୀଚ ହୀନ ମନେ କରିବେ ।

ବୀର ପୂଜା ହେଉଛି ଜାତିର ସର୍ବଶ୍ରେଷ୍ଠ ଉପାଦାନ । ଉତ୍କଳ ଆଜି ପର୍ଯ୍ୟନ୍ତ ତାହା ଶିଖି ପାରି ନାହିଁ । ଏପରି ଗୋଟିଏ ମହତ୍ ନୀତିର ଅଭାବ ଉପବାସରେ ଉତ୍କଳ ଯେ କେତେ କାଳ ସଢ଼ିବାକୁ ପଡ଼ିବ ଦେଶର ତରୁଣ ତରୁଣୀହିଁ ଜାଣନ୍ତି । ଏହି ନୀତି ଶିକ୍ଷା କରିବା ଲାଗି ଉତ୍କଳକୁ ପାଶ୍ଚାତ୍ୟ ଦେଶ ଓ ପଡ଼ୋଶୀ ବଙ୍ଗଭୂମିର ପଦାଙ୍କ ଅନୁସରଣ କରିବା ଅସଙ୍ଗତ ହେବ ନାହିଁ ମନେ କରେ ।

ଏଣୁ ଉତ୍କଳର ପ୍ରତ୍ୟେକ ରାଜା, ମହାରାଜା ସମସ୍ତେ ଏହି ବୀର ପୂଜାର ପୂଜାରୀ ହେବା ଉଚିତ ।

ମୋର କେତେକ ଗୁଡ଼ିଏ କବିତା ପାଠ କରି ଟିକିରିର ରାଜକୁମାର ଓ ଉତ୍କଳର ଲବ୍ଧ ପ୍ରତିଷ୍ଠିତ ବିଲାତ ଫେରନ୍ତା ଚିତ୍ର ଶିଳ୍ପୀ ଶ୍ରୀ ଶରତ୍‌ଚନ୍ଦ୍ର ଦେବ, ଟିକିରିର ସୁଯୋଗ୍ୟ ପରିଚାଳକ ହରିହର ଦାସ ବି, ଏ, ପୁଣି ଟିକିରି ରାଜାଙ୍କର ବ୍ୟକ୍ତିଗତ ପ୍ରତିନିଧି ଶ୍ରୀ ଲକ୍ଷ୍ମୀନାରାୟଣ ଦେଓ୍ୟାନ ପଟ୍ଟନାୟକ ମହାଶୟ ଯେଉଁ ଭାବରେ ମୋତେ ଉତ୍ସାହ ଦାନ ଦେଇଛନ୍ତି ତାହା ମୋର ସାହିତ୍ୟ ଜୀବନର ପ୍ରଥମ ପଥ ପ୍ରଦର୍ଶକ ପ୍ରଭାତ ମନେ କରେ । ଏଣୁ ସେମାନଙ୍କ ନିକଟରେ ମୁଁ ଚିରଋଣୀ ପୁଣି ମୋର ବାଲ୍ୟ ଗୁରୁ ପଣ୍ଡିତ ଶ୍ରୀ ଜଗନ୍ନାଥ ଦାସ 'ବେଦନା'ର ସଂଶୋଧନ ଭାର ବହନ କରି ବାଲ୍ୟକାଳର ଗୁରୁଋଣ ଉପରେ ଏ ଯେଉଁ ଗୁରୁଋଣ ଲଦି ଦେଇଛନ୍ତି ତାହା ମୁଁ ଜୀବନରେ ଶୁଝି ପାରିବି ନାହିଁ ।

କବିତା କୁଟୀର
ଜନ୍ମାଷ୍ଟମୀ ୧୧—୮—୪୭

—ଲେଖକ—



# ପ୍ରେମ

ପ୍ରେମ ଯଦି ପାପ ହୁଏ ପୁଣ୍ୟ କିସ ଅଛି ଭବେ,
ପ୍ରୀତି ଯଦି ବ୍ୟଭିଚାର ସତ୍ୟ କାହିଁ ଏଥି ଲଭେ !
ଉଁଇଲେ ଗଗନେ ରବି କମଳ କିପାଇଁ ଫୁଟେ,
ସୌରଭ ଅପିଲେ ଭ୍ରମି ଭ୍ରମର କି ଅଶେ ଜୁଟେ ?
ଶଶାଙ୍କ ସରଗେ ଯଦି ଉଦୟେ ଅଗଣା ଛୁଏଁ
ତା ଦଗେ କୁମୁଦ କିଆଁ ପ୍ରଣୟ ନରଚା ଦାବେ ?
ଉତ୍ତୁଙ୍ଗ ଉଦଧି କିଆଁ ପୂନିଅ ନିଶିଥେ ଫୁଲେ
ସାଗର ମିଲନ ପଶେ ତଟିନୀ କିପାଇଁ ଭୁଲେ ?
ନର ଯଦି ଧରି ପ୍ରେମେ ମହାପାପୀ ହୁଏ ଗଣା
ତାର ପ୍ରୀତି ପାଇଁ କିଆଁ ବାଜେ ନିଦାଘ ବାଜଣା ?
ଏ ଜଗତେ ଶ୍ରେଷ୍ଠ ପୁଷ୍ପ ଯେଉଁ ପ୍ରେମ ପାରିବାର
ଦେବ କି ମାନବ ପାଶେ କେବେ ତାହା କଦାକାର ?
ସୁକୃତ ଯେଉଁଠି ପ୍ରେମ ପାପ କିଆଁ ହେବ ଗଣା
ମହା ପୁଣ୍ୟ ଅଟେ ତାହା ନନ୍ଦନ ସୁରଭି କଣା ।



## ସିଏ ସିନା ମୋର ହୃଦୟ ରାଣୀ

ସିଏ ସିନା ମୋର ହୃଦୟ ରାଣୀ,
ପ୍ରଣୟ ମୁକୁଟ ପିନ୍ଧାଇଲା ଯିଏ
ଗୀତ ସ୍ୱର-ଗନ୍ଧା ବାଣୀ ।
ଭୃଙ୍ଗ ସମାନ ବୁକେ ହୋଇ ଉଭା
କଲ୍ଲ ଉଠେ ଅଟ୍ଟହାସ
ଘର କୋଣେ ବନ୍ଦୀ ଅବଳା ଜାଡରେ
ଶିଖାଇଲା ନୂଆ ରାସ ।
ପୂରଣି ପୃଷ୍ଠେ ଜାଳିଲା ଦୀପାଳି
ପୁରାତନ କର ସାକ୍ଷୀ
ଅଞ୍ଜନ ଦେଲା ଜଗତ ଅଖିରେ
ସାଜି ନିଜେ ନବମାଝି ।
ସ୍ୱଭାବ ତିର ଫଲ୍ଗୁ ଝରଣା
ଦେଖାଇଲା ଯିଏ ଭବେ
ତା’ ପାଇଁ କପାଇଁ ସଂସାର ଅଙ୍କ
ପୂରିଲା ଗନ୍ଧା ରବେ ।
ତଥାପି ସିଏହିଁ ମୋ ହୃଦୟ ରାଣୀ
ତା ଲାଗି ମୋହର ଅନ୍ତର ତଳୁ
ଝରଇ ନୟନ ପାଣି ।
ସିଏ ସିନା ମୋର ହୃଦୟ ରାଣୀ
ଦେଲା ଯେ ମୋହର ଲୌହ ବୁକୁରେ
ଗନ୍ଧା ସୁବର୍ଣ୍ଣ ଖଣି ।
ଜଗତ କି ଭଲ ବାଛି ପାରେ ସତେ
ମଦ-ଗନ୍ଧା ତାର ବୁକ

ସଭ୍ୟତା ବୋଲି ସ୍ଫୀତ ହୋଇ ଯେ
ମାନବରେ କରେ ମୂକ ।
ଯନ୍ତ୍ର ଯାହାର ଜୀବନ ଜୀବିକା
ପୌରୁଷ ଅପମାନ
ବିଜ୍ଞାନ ବଳେ ଭ୍ରାତୃହନ୍ତା
ହୋଇ ଭାବେ ବଳୀୟାନ ।
ବାର ବରଷର କନ୍ୟାରେ ଯିଏ
ବାନ୍ଧେ ବିବାହ ଡ଼ୋର
ବାଲ୍ୟ ବିଧବା କ୍ଲେଶକେ ଗର୍ବ—
କରେ ଯେଉଁ ବାର ବାର ।
ସିଏ କି ଗୋ ସଖି ବାନ୍ଧୁ ପାରେ ଅଜ
ସତ୍ୟର ପୂତ ପଥ
ଭୁଲେଣି କପାଇଁ ଚିଙ୍ଗି ଦଉ ଗୋ
ମିଥ୍ୟାର ପଇବତ,
ସିଏ ସିନା ମୋର ହୃଦୟ ରାଣୀ
କହୁଅଛୁ ସିଏ
କାନେ କାନେ ମୋର
ସତ୍ୟ ପୂତ ବାଣୀ ।



## ଆହ୍ୱାନ

ଯୌବନ ଅଳସ୍ୱେ ସଖି ଶୋଇଥିଲି ମୁହିଁ
ଫଗୁଣର ସମୀରଣ ବହୁଥିଲା ଝୁରି ।
ଚଉଦିଗେ ହସୁଥିଲା ସୁମନ ରୁହାଇ
କୁହୁତାନେ ମୂର୍ଚ୍ଛିଥିଲା କୋଇଲି, ବାଟ ଘାଟ ।

କେତେ ଯେ ରୂପସୀ ଗୁହ୍ନିଁ ଥିଲି ହାତ ମାଳ
ଅପାଙ୍ଗ କୋଦଣ୍ଡ ଠାଣି ଯାଉଥିଲେ ଗୁଳି ।
ଦେଖିଲେ କି ନୟନେ ମୋର ନିଦ୍ରା ଥିଲା ଘୋର
ସ୍ୱପ୍ନ ଏକ ନାଚୁଥିଲା ନୟନ ବଦାର ।
ଏକାଳେ ମୋ ଦ୍ୱାରେ ସଖି ଟାହୁ ବାହୁ ରଥ
ଆସିଲ ତୁମେ କି ସ୍ୱର୍ଗ ଅପସରୀ ବତ ।
ଡାକିଲା କୋକିଳ ଉଠେ ଉତଳା ପବନ
ବହିଲା ସଜୋରେ, କେତେ ଫୁଟିଲେ ସୁମନ ।
ସଉରଭ ଛୁଟି ଆସି ଅଙ୍ଗେ ଅଙ୍ଗେ ମୋର
ରଚିଲା ସୃଜନ ଏକ ନବୀନ ହୃଦୟ ।
ସୁହିଁଲି ମୋ ଅବୟବେ, ଜଳେ ଦୀପ୍ତ ଜ୍ୟୋତି
ପ୍ରତି ଲୋମେ ତେଜୀଦ୍ୟାନ, ଜଣି ଲକ୍ଷ ବତୀ ।
ଏକାଳେ ଗୋ ନେଲ ଠାଣି 'ସାଥି ସାଥି' କହି
ଯୁଗର ମୋ ସ୍ୱପ୍ନ ନିଶା ଶେଷ ହେଲା ସହି ।
ସେହି 'ସାଥି ସାଥି' ବୋଲି ଡ଼ାକେ ମୁହିଁ ଆଜି
ନ ଆସ କିପାଇଁ ପ୍ରିୟେ ପ୍ରଣୟିନୀ ସାଜି । ?

## ଗୋପନ ପୂଜା

ପ୍ରଣୟର ଛବି ସଖି ଦେଲ ଯା ମୋ ବୁକେ ଲିହି
ଜନମ ଜନମ ଲାଗି ପୂଜିବି ଗୋପନେ ନିହି ।
ନିଭିଲ ପାରିବ କିଏ ସେ ଛବି ବୁକୁ ମୋର
ଅଙ୍କିଛ ତୁମେ ଗୋ ସଖି ଶିଳପ କଉଶଳ ।
ତମର ଦାନ ଗୋ ତାହା ତାହାହିଁ ମୋ ଧ୍ୟେୟ
ମନ୍ଦିର ପଥିକ ମୁହିଁ ସେବକ ପାଥେୟ ।

ଭାବେ ମୁଁ ନିର୍ଜନେ ବସି ସେ କାଳ ଦୃଶ୍ୟ ଯେତେ
ଅନ୍ତର୍ଦ୍ଧାନ ହବାବେଳେ ଭାସେ ମୋର ମନ ତେତେ ।
ପାସୋରି ଯାଏ ଗୋ ସଖି ନିଜ ଜ୍ଞାନ, ମାନ, କାୟା
ମନ ମୋର ଧାଏଁ ସଖି ଅନୁପର ପ୍ରେମ ମାୟା ।
କେତେ ଜନ୍ମ କଳପନା ଉଙ୍କି ଉଙ୍କି ଆସେ ଥିର
ଆନ ନିମିଷରେ ହଜି ଯାଏ ନୀଳ ନଭେ ମିଳି
ଶେଷେ ଝଞ୍ଜା ପରେ ଧୀରେ ନେତ୍ର ନୀର ବିନ୍ଦୁଟିଏ
ତାହାଙ୍କୁ ଗୋପନ ପୂଜା—ଫୁଲ ରୂପ ପାଇଁ ଦିଏ ।



## ଭିକ୍ଷା

ଅତୀତ ଦୁଆରେ ହାତ ପାତେ ମୁହିଁ
ଦେବା ପାଇଁ ସେହି ଉମଙ୍ଗ ନିଶା
ଝରଣି ମଞ୍ଜୁଳ ଝିଙ୍କାରି ଝଙ୍କୃତ
ଶୀତଳ ସମୀର ସୁରଭି ମିଶା
ନୀରବେ ନିହାରି ଝୁରୁଥିଲି ତାଙ୍କୁ
ଗଣୁଥିଲି କୋଟି ବିଘଣ୍ଟା ଦଣ୍ଡ
ସରସୀ-ସଲିଳେ ବୀଚି ଦଳ ଗାଇନେ
ଉଠିଥିଲେ ମତ୍ତା ଆନନ୍ଦେ ମାତି ।
ଗଗନୁ ତାରକା ପୁଲକ-ପଲକେ
ଚୁମି ଯାଉଥିଲି ଶୋଭା ତଣ୍ଡୁଳ
କୋକିଳ ଏକାକେ ବନସ୍ଥଳୀ କୋଳେ
ମେଲୁଥିଲା ଉଚ୍ଚେ ଓଁକାର ସ୍ୱର ।

ଏକାଳେ ପ୍ରେୟସୀ     ଘଟରେ ମୋହର
ଢାଳିଥିଲା ତାର ତନୁ ବକ୍ଷସି
ଅଧର ମୋ ପ୍ରେମ     ଆବେଶେ ପ୍ରିୟାର—
ଭାଲେ ଦେଉଥିଲା ଚୁମ୍ବନ ବୋଳି ।
ସେହି ପୁଣ୍ୟ ବିଭବସି
ଅତୀତ ହେ ତବ     ଗନ୍ତାଘରୁ ଆଜ
ଡାଅ ବାରେ ଦୟା କରି ।
ସେହି ପୁଣ୍ୟ କ୍ଷଣୀଥିଲା
ବର୍ତ୍ତମାନ କାନେ     ବାଜୁ ତା' ନୂପୁର
ନିକ୍ୱଣ କଣ କଣି ।
ଅତୀତ ହେ ! ତବ     ଅତଳ ସାଗରେ
ବୁଡ଼ିଅଛି ଯେଉଁ ସମ୍ପଦ ମମ
'ତା' ଲାଗି ଲୋତକ—  ଜଳେ ଆଶା ନାବ
ଭସାଏ ବାଞ୍ଛିତ ପୁନଶ୍ଚ ସମ ।
ହେ ପ୍ରିୟତମ !     ତବ ଦୟା ବଳେ
ପାଇ ପାରେ ଯଦି ସେହି ମୋ ଧନ
ସାଗର ବୁକୁରେ     ମରକତ ଧରି
ନାବ ମୋ ନାଚିବ ପୁଲକ ମନ ।
ମୋ ପାଶେ ଶୃଦନା     କଣି ବସିନନା
ହସୁଥିବ ମୁଖ ଥୋଇ ମୋ ବୁକେ
ଆଶା ତଟୀ ଭରି     ଅସରନ୍ତି ପ୍ରେମ
ଭୁଲିଥିବ ସ୍ୱର୍ଗ ସ୍ୱରାଜ ସୁଖେ
ବର୍ତ୍ତମାନ ମୁଖେ     ଅଟ୍ଟହାସ କରି
ଗରବ ଭରବି ନିମିଷେ ଚୂନା
ଓଳଥ ସୈନିକ     ସମର୍ଥାରେ ମୁହିଁ
ଲକ୍ଷ୍ୟ ଦେବି ଶର ତୀକ୍ଷ୍ଣ ସୁନା ।

ଅତୀତ ଅନୁରୋଧ ବାର ବାର
ପୁଣୀ ମୋ ସ୍ନେହ    ଯାମିନୀ ଗୋଟିଏ
ଦେଇ ଯାଅ ଦୟା କରି ।



## ଭ୍ରାନ୍ତ

ବିଶ୍ୱେ ଆଜ ମୁଁ ଭ୍ରାନ୍ତ ସମାନ
ଭ୍ରାନ୍ତ ଗୀତିକା ଗାଇବି
ନୟନ ଲୋତକ—ଆଶାର ସୁମନ
ବ୍ୟଥା କଣ୍ଠରେ ଗୁନ୍ଥିବି ।
କା' ଲାଗି ସେ ମାଳ କିଏ ତା' ମୂରବୀ
ଜଗତ ସାରା ମୁଁ ଖୋଜିବି
ଦୀନ ଭିକ୍ଷୁକ ଧୂଳି-ଧୂସରିତ
କାଙ୍ଗାଳ ବେଶ ସାଜିବି ।
ପୁଡମସ୍ତ ଦେହେ ନୂଖୁରା ମୋ ଶିରେ
କୋଟି କୀଟ ଘର ରଚିବ,
ମୋ ଲାଗି ଯଦର୍ଣ୍ଣ ବର୍ଷିବେ ଅମୃତ
ଜୀବ ମୁହିଁ ଭାଗ୍ୟ ମଣିବି ।
ପଛରେ ଯେବେ ମୋ ପିଲାଏ ମା'ରବେ
ପାଗଳ ପାଗଳ ଡାକି,
ଲୋହିତ ନୟନେ ନ ଚାହିଁବି ପୃଷ୍ଠେ
ପୋଛୁ ଦେଇ ଆଖି ବାରି ।
ପଛରୁ ଯଦ ବା ମାରିବେ ପଥର
ଗୋଟାଇ ପଣତେ ରଖିବି,
ଏ ସବୁ ଜୀବନ—ଫୁଲ୍ ମୋର ସେହି
ବ୍ୟଥା କଣ୍ଠରେ ଗୁନ୍ଥିବି ।

ଯେବେ ମୋ ଜୀବନ ପୂର୍ଣ୍ଣ ହୋଇବ
ଶାନ୍ତିର ଶ୍ୱାସ ଫେଳିବ,
ଆଶା ମୋ ମାଳଟି ସମାଧି ସମୀପେ
ମାନସୀ-କଣ୍ଠେ ବାନ୍ଧିବ ।



## ବିରହୀ

କୁସୁମ ହାସେ ସନ୍ଧ୍ୟା ଆସେ
ମଳୟ ନାଚେ ମନ୍ଦେ
ଗଗନ ପାରେ ବିହଗ ଚଳେ
ବିଦାୟ ଗୀତିର ଛନ୍ଦେ ।
ଯାମିନୀ ହୋଲେ ଚନ୍ଦ୍ରମା ଖେଳେ
ଲୁଚିବ ଏବେ ଧରି
ବିଫଳ ଗାଇ ବିରହ ଭାଇ
ବିରହୀ ଜୀବନ ସରି ।
ଶେଫାଳି ଭୁଲ ନୟନ ଜଳ
ବକ୍ଷେ ଝରେ ମୋ ନିତ
ଅର୍ଘ୍ୟ ଥାଳୀ ନିତ୍ୟ ଖାଲି
ନିଶି ଦିବା ଯାଏ ବିତ ।
ବସନ୍ତ ଯେବେ ଯାଉଛି ତେବେ
ଅଛି କି ଲଭ ଏ ପ୍ରାଣେ
ଗ୍ରୀଷ୍ମ ଗର୍ବ ସହିବା ସର୍ବ
ଘଟେ ହୃଦୟ ଦାନେ ?
ଚପଳ ଚୂଲି ଯାଉଛି ଗାଲି
ଜଳେ ତା ଚମକ ବକ୍ଷେ

ଗୃହ ଯାଉଛୁ    ଗୃହିଣୀ ଅଛୁ
ତପ୍ତ ମୋ ହୃଦ କକ୍ଷେ
ଏହୁ ଗଗନ    ବାୟୁ ତପନ
ମିଳନ ପୂର୍ବ ସାକ୍ଷୀ ।
ନୟନ ବାରି    ବକ୍ଷ ଭରି
ଅଜ ମୁହିଁ କାନ୍ଦମାଖି ।
ଜୀବନ ଧାରେ    ଯଦ ବା ବାରେ
ମିଳନ ନ ହୁଏ ହାୟ
ମନୁର ସମ    ଜୀବନ ମମ
ମରଣ ଅଟେ ଶ୍ରେୟ ।

## ଯାହା ମୁଁ ଥିଲି ଭାବି

ଯାହା ମୁଁ ଥିଲି ଭାବି
ବିରହୀ ବିହଙ୍ଗମ ସଖି
ଉଡ଼ି ଉଡ଼ି ଯିଏ ଅଜ ଗୃହ ।
ଜଗତର କେଉଁ ଅଜାଣତ କୋଣେ
ନଥିବେ ସ୍ୱଜନ ଯେଉଁଠାରେ ଜଣେ
ନଥିବ ଯେଉଁଠି ଭଲେ ଅମ କଥା
ଯେ' ଦେଶେ ଅଜଣା ଅମ ସୁଖ, ବ୍ୟଥା,
ସେଇଠି କାଟିବ ଭାବିଥିଲି ଦିନ
ଧରି ତମ ହାତ ମୋ ଜୀବନ ଦାନ ।
+ + + ÷
ଫେରୁଥା'ନ୍ତି ଯେବେ ଶଠ ପର ଦ୍ୱାରେ
ନୁଆଇଁ ମସ୍ତକ ବ୍ୟସ୍ତଭାବ ଭରେ ।

ଗୃହ୍ନିଁ ଥା'ନ୍ତ ଗୋଲ୍ଲ ଲକ୍ଷି ସଖି ପର୍ଣ୍ଣ କୁଟୀ
ଦେଖି କୁଟୁ ମତେ ନାଚନ୍ତ ପାପ୍ଲେଟି
ବୁକେ ରଖି ମୁଖ ଗୃହାନ୍ତ ଗୋ ମତେ
ହୃଦୟ ବେଦନା ଖୋଲ୍ ନିଜ ହସ୍ତେ
ବହନ୍ତ ମଧୁରେ, କେତେ ସୁଖ କଥା
ଚଳାଇ ବ୍ୟଜନ, ଶିହରନ୍ତା କାୟ ।

\+ + + +

ଅଜୁ ଦନେ ଯେବେ ଜୀବନା ସକାଶେ
ମାଗନ୍ତି ମେଲ୍ଲଣି ଯାଇ ତମ ପାଶେ,
ଦେଖୀନ୍ତ ମୋ ଶିରେ ନାହ୍ନିଁ ଯଦ ଟୋପି
ଦଉଡ଼ ଆଣନ୍ତ ସୁହାସ ଅଟେଷି
ଶିରେ ସଯତନେ ଦଅନ୍ତ ପିନ୍ଧାଇ
ମତେ ଦରମୁଜା ନୟନେ ଚନାଇଁ ।
ଏ ବେଳେ ମୁଁ ପ୍ରିୟେ ଠାଣି ଘମ କର
ବଦାୟ ନଅନ୍ତ ଅଙ୍କି ତୁମ ଗାର ।
ବୃଥା ସବୁ ଯାହା ଥିଲ ଭାବ
ବରସ୍ତ୍ରୀ ବହଙ୍ଗମ ତାହା
ବୁଲେ ନବେ ନବେ ରାବ ।



# ଯୁଗ—ଶିଳ୍ପୀ

ଯୁଗ ଶିଳ୍ପୀ !
ରହି ବାରେ ରହି ବାରେ ଆଜି ଜଗରେ ମୁଁ ବନ୍ଧନ
ଥରେ ସ୍ପନ୍ଦ ବୁଝ ବ୍ୟଥା ମୋର
ଅନନ୍ତ ବେଦନା ।
ନଭଦାର ନୁହେଁ ତାହା ବେଭେ
ଜ୍ୱଳନ୍ତ ତା ନୃତ୍ୟ
ଶତଛିନ୍ନ ପିଞ୍ଜରର ଘୋର
ବୈଶାଖୀ ଅଦତ୍ୟ ।
ଶ୍ମଶାନ ଅନଳ ତାରେ
ଜର ନାହିଁ ଦାହ
ମୃତ୍ୟୁ ପରେ ବର୍ଷେ କାମନାର
କାଳ ବାରବାହ ।
ସ୍ୱପ୍ନାଲୋକେ ଦୂର ବୁଲେ ତାର
ସଫଳ ପୂର୍ଣ୍ଣିମା
ପ୍ରତୀକ୍ଷାର ସୀମା ପାରେ ଘୂରେଁ
ବିପଦର ଯାମା ।
କାନ୍ତ ତାର ଅବୟବେ ଫୁଟେ
ସୁବର୍ଣ୍ଣ କରବୀ
ମହା ମଉଛବ ଗୀତ ନାଦେ
ଉଠଇ ପୂରବୀ ।
ଯୁଗ ଶିଳ୍ପୀ ! ଦେଖ ବାରେ ଆଜି
ବୃକ୍ଷ ଚନ୍ଦନ ତୁଳିକାରେ ତବ
ଲେଖିଯାଅ ସେହି ଶବ୍ଦ ବାଜା ।
ଯୁଗ ଶିଳ୍ପୀ !
ମନେ ଅଛି ସେହି ଦିନ କଳ୍ପ ଭୂମେର ଅଙ୍କନ

ସାହାଜାହାନର ତପ୍ତ ଲୋତକ
ମରମ ବେଦନା ।
ତାଙ୍କ ମହଲର ମରମରେ,
ଅବ୍ୟକ୍ତ ଗୀତିକା,
ଅଲକ୍ଷସେ, ମୂର୍ଚ୍ଛ ମୁଗ ତାର ଅଗେ ଅଙ୍କ ଫିଭା
ସତ୍ୟବାଦୀ ମରୁଭୂମି ଚର
ତୁମେ ଶିଳ୍ପୀ ଶିର,
ରଚିଗଲ କାନ୍ତ ଏକ ଛବି
ଯୁଗଳ ମନ୍ଦର ।
କୃଷ୍ଣ ଯେବେ ଫୁଙ୍କି ଦେଲେ ବଂଶୀ
ତୁମେର ସେ ଧନ
ଚହିଲ ପୂର୍ବଣ ରୂପ,
ପ୍ରେମର ବନ୍ଦନ
ଅଜି ବି ସେପର ଏକ ଛବି
ଚହିବାର ପାଇଁ
ଧନ୍ୟ ତବ ଶାଶ୍ୱତ ତୂଳିକା
ଶୁଣିବ କି ନାହିଁ ।
ଦେଖିବ !
ସେହି ଛବି
ପ୍ରେୟସୀ ମୋର
ମହଥିବ ମୁହଁ;
ପ୍ରିୟା ତ.ଳଦେବ ଅଶ୍ରୁଜଳ ।



## ଗୋପନ ବ୍ୟଥା

ଝର ଝର ଆଖି ବାରି
ବହେ ମୋ ବୁକୁ ପରେ
ଥରଥର ଥରଥର
ହିଆ ମୋ ଆଜ ଥରେ ।
ଢଳ ଢଳ ଭ୍ରାନ୍ତ
ହୁଅଇ ବ୍ୟଥା ମଥା
ଗୁମରି ଗୁମରି ସେ ଯେ
କହେ ନୀରବ କଥା ।
ତମେ ଗୋ ମୋର
କିପାଁ ଏତେ ଯାଦୁ ମନ୍ତ୍ର ଭର ।
ଖାଇବା ନ ହୁଏ ଇଚ୍ଛା,
ପିଇବା କଣ୍ଠୁ ଲାଗେ
ଚଳପ ତୃଷ୍ଣାର ସମ;
ତୁମଠୁ ଭିକ୍ଷା ମାଗେ ।
କହିବ ନାହିଁ କି ସଖି
ଅଛି ଗୋ କଥା ପଦେ
କିଏ କି ତମର ପଥ
କହ ଗୋ ବଳେ ସେଧେ ।
ହିଆ ଗୋ ମୋର
ଅବା ତମେ ଆଜି ମତେ ଗୋ ଛଳ ।
ମରୁର ମରୀଚି ସମ
ଧାଏଁ ମୁଁ ତମ ପଛେ
ଆଶାର ତାରକା ପୁଞ୍ଜ,
ଅଜଣା ଶିରେ ଗଢେ ।

ହେଲେ ଭ ସଖି ଗୋ ତମେ
ଯାଅ ହେ ଦୂରେ ଦୂରେ
ଆଶାର ବୀଣାଟି ଖାଲି
ଆଶାରେ ବାଦ ଝୁରେ ।
ପ୍ରିୟା ଗୋ ମୋର
ଦେଖ ଦହେ ବୁକୁ ବେଦନାନଳ ।
ଦେଖେ ନାହିଁ ଅଧିକାର
କହୁହିଁ ମୋର ଅଙ୍ଗେ
ମନ ମୋ ବୁଲଇ ସଖି
ତମର ସଙ୍ଗେ ସଙ୍ଗେ ।
ପ୍ରିୟେ ଗୋ କି ଅଛି ମୋର
ସଂସାରେ ଆଜ୍ ତେବେ
ନିର୍ଜୀବ ଦେହ ଥର
ତୁମେ ମୁଁ ସିନା ଭବେ ।
ତମେ ଗୋ ମୋର
ଯାହା ତମ ଇଚ୍ଛା ତାହାହିଁ କର ।
ମାତର ପଢ଼ିଲେ ସଖି
ଶୁଣିବ ତମ ମନେ
ଭରିଲେ ଧରଣୀ ଯେବେ
ନିଦାରେ ଘ୍ରାନ ଜନେ ।
ଭହିଳ ତମେଇ ପ୍ରିୟେ,
ବପଦ ଠେଲି ଦିଅ
ପ୍ରିୟ ହେ ପ୍ରେୟସୀ ବୋଲି
ସ୍ୱପ୍ନେ ବୋଲେ ନିଅ ?

ପ୍ରିୟ ଗୋ ମୋର
ତେବେ କିପାଁ ଆଜ ହଇଲ ପର ।
କହୁଥିଲ ଆଉ ଦିନେ
'ପ୍ରିୟ ହେ ମୁହିଁ କିଣା
ପଛେ ମୋ ପରାଣ ଯାଉ
ତମର ପଦେ ସିନା ।'
ଏତେ କଥା ଯାଉ ସଖି
ପାଶୋରି ଗଲ ତମେ
ବ୍ୟର୍ଥ ଜୀବନ ସିନା
ଝୁରେ ମୁଁ ସଦା ମନେ ।
ତମେ ହେ ମୋର
ତମ ପ୍ରେମ ତୃଷି
ଶୁଖିଯାଉ ମୋର ପରାଣ ଝର ।



## ଜଗତ କହେ ଯଦି—

ଜଗତ କହେ ଯଦି — ମତେ ଗୋ ଅରସିକ
ଦେଖାଇ ଦେବି ସଖି — ମୋ ରୂପ ବୟଆଟିକ ।
ଜାଣିବେ ଜଗତ ଜନେ — ଗଢା ମୁଁ କି ଉପାଦାନେ
ଥିଲି ମୋ ମଧୁବା ପୁଷ୍ପ — ବାଜେ କହୁଁ ଭେଷି ଭୂଷି ।
ନନ୍ଦନ ଥିଲି ଗୋ ସେଥି — ଶାରଦାତ ଫୁଟେ ନାଥ
କୋଟି କୋଟି ଅପସରୀ — ନାନା ବେଶ-ଭୂଷା ଧରି ।
ନାଚ ଗାନେ ଢଳୀ ନାଚି — ସାବନ୍ତ ଗୋ ମିଳିମିଶି
ନ ଦେଖେ ଜଗତ ସିନା — ମୁହିଁ ଯେ ସେ ପୁରର ବଣା

ଏଣୁ ମୁଁ ନୂତନ ଗୀତ    ନୂତନ ଗୋ ଛାନ୍ଦସିକ
ଜଗତ କହେ ସିନା    ମତେ ଗୋ ଅରସିକ ।

୨

ଅଛି ମୋ ପ୍ରେୟସୀ ଜଣେ    ଯା' ପାଇଁ ମୁଁ ଧନ ଗଣେ
ଦେଇଥିଲା ଦାନ ଏକ,    ତା' କରେ ଭିଡ଼ି ମୋ ବେକ
ଅଧରେ ଅଧର ଧରି    ମଧୁର ଥିଲା ସେ ଭରି
କବରୀ ସୁବାସ ତାର    ନାସା ପାଶେ ବାର ବାର
ମିଶାଇଛି ଢଳ ଢଳ    ମୋ ବୁକେ ରଖି ତା ଶିର
ତା ଲାଗି ସିନା ମୁହଁ ମାଗିବ ଅଳ୍ପ ଭିକ
ଜଗତ କହେ ଯଦ ମତେ ଗୋ ଅରସିକ ।

୩

ବୁକେ ମୋର ନାଇଁ କଲେ,    ଦେହ ଶୁଖେ ପଲେ ପଲେ
କହେ ନାସା ଶ୍ୱାସ ଖର    ଦେଇଛି ଗୋ ଉତ୍କଟ ଜ୍ୱର
କରତ ଦାଏ ମୋ ସ୍ମୃତି    ନ ଜାଣେ କେ ଦଦା ବ୍ରତ
ତୀକ୍ଷ୍ଣ ଖଡଗ ଧାରେ    ହାଡ଼ ମୋ କେ ଚୂନା କରେ
ଲୋତକ ବଦନେ ମୋର    ବର୍ଷି ଉଠେ ଥର ଥର
ତେବେ ଗୋ କେସନ ମୁଁ ଗୀତ ଅରସିକ
ଜଗତେ ଦେଖାଇ ଦେବ ଯଦ ମୋ ବ୍ୟଥା ଟିକ ।



## ବସନ୍ତ--ବଳାକା

ଦେଖି ଗୋ ଗଗନେ ଯାଏ
ଭାବେ ସେହ୍ନ ପ୍ରିୟା-ସରସ-ସଲଜ୍ଜହାସ
ସ୍ତବ୍ଧ ଅଟବୀ          ଥରଇ ଟେ ଅଙ୍ଗ
ଝିଙ୍କି ଝିଙ୍କାରି ରବେ
ମଳୟ ମନ୍ଥରେ          ଫୁଲ ଓ ପଲ୍ଲବ
ନାଚନ୍ତେ ଗନ୍ଧରବେ ।
ସ୍ୱର୍ଣ୍ଣ ଗୋଧୂଳି          ଉଡ଼ ଉଡ଼ ଆସି
ପ୍ରତି ଚନ୍ଦ୍ରପାଏ ଚୁମି
ଅସ୍ତ ରବିର          ରଙ୍ଗର ଆଲୋକେ
ହସି ଉଠେ ବନ ଭୂମି
ସରିଛି ସବୁ ମମ
ତଥାପି ପ୍ରେୟସୀ ବିନା ଲାଗେ ନୂଆଁ ସମ ।
ସେଦିନ ଏବନେ          ପ୍ରିୟାର ସ୍ମୃତିରେ
ମିଶିଥିଲା ମୋର ସ୍ମୃତି
ହୃଦର ବେଦନ          ଢାଙ୍କିଥିଲା ମଣ୍ଡି
ହୋଇଥିଲା ଘୋର ରାତି
ଲତା ବନସ୍ପତି          ଥର ଜୁଟିଥିଲା
ଢଙ୍କଣ ଗୁମ୍ଫ ଖୋଲେ
ସ୍ତବ୍ଧ ଅବନୀ          ଢଳମି ଥିଲା
ରଜନୀ ତମିର କୋଳେ
ବେନି ଓଷ୍ଠ ପ୍ରେମେ ମାତି
ମିଳି ଥିଲା ଯେବେ, ମିଶି ଥିଲା ବେନି ଛାତି ।
ପ୍ରିୟା ସରସିଜ          ନୟନ ଯୁଗଳ
ପ୍ରେମାବେଶେ ଥିଲା ଢଳି

ଫୁଲି ଉଠୁଥିଲା ପୁଣି ତାର ବୁକ
ଅଶାନ୍ତ ତଟିନୀ ପରୁ
କପାଳୁ କପାଳେ ଝର ପ୍ରୀତି ଝାଳ
ଧୋଇଥିଲା ଝର ଝର
ଅକୁଳ ଆବେଗେ ବେନି ଅବଶୃଙ୍ଖ
ଭିଡ଼ିଥିଲା ବେନି କର
ଘୋଟିଥିଲା ଘନ ବ୍ରତ
ଗାଢ ଆଲିଙ୍ଗନେ ପୂରିଥିଲା ବେନି ଗାତ୍ର ।
ସୁପ୍ତ ବାସନା ଜାଗି ଥିଲା ପ୍ରିୟା
ଉଷ୍ଣ ଉରଜ ଛୁଇଁ
କ୍ଷୁବ୍ଧ ବୁକୁର ଭଗ୍ନ ବୀଣାଟି
ବାଜୁଥିଲା କଇଁକଇଁ ।
କୋମଳ କମ୍ପନ ଗଣ୍ଡେ ପ୍ରିୟାର
ଅଧର ନିବିଡ଼େ ଗୃପି
ଚୁମା କଲି ଯେତେ ସଞ୍ଚିତ ଆଶା
ବୁକେ ମୋ ଥିଲା ଗୋ ଥାପି
ପ୍ରତି ଅଙ୍ଗ ପ୍ରେମେ ମାତି
ମିଳିଥିଲା ଯେବେ, ମିଶିଥିଲା ବେନି ଗାତ୍ର ।
ସେ ଦିନର ଏତେ ଘଟଣା ଜଗତେ ବି
ନଜାଣିଲେ ତଳେ ହେଲେ
ଚଞ୍ଚଳ ଚପଳା— ଚପଳା ଜାଣିଲା
ଲୁହି ଦେଲା ମେଘ ମେଳେ
ଉଣ୍ଡ୍ରିମ ପିଠି ହୃଦର ବଉଦ
ଦେଲା ଯେ ଜଗତେ କହି

ହାୟ ! ହାୟ ! ଏହୁ ନିନ୍ଦା ଅପବାଦ
ସହୁ ପାରିବ କି ସହ୍ୟ !
ଘୋର ସରମରେ ସତି
ହାୟରେ, ପ୍ରିୟା ଯେ ଭୂତଳେ ଯିବଣି ପଡ଼ି ।
ଅନ୍ତରେ ମୋର ଜାଗିଲେ ନାଥ ପ୍ରାତେ
ସ୍ମୃତିର ଅର୍ଘ୍ୟ ସଜି
ଯେହ୍ନେ ବିଜନର ପ୍ରତି ରେଣୁ ଅଣି
ଦିଏ ମୋ କଳ୍ପନେ ମାଜି
ମୂର୍ଚ୍ଛିତ ପାଡ଼ଏ ପରଶ ମୋହର
ସେହୁ ବନଫୁଲ ବାଜି
ଯେହ୍ନେ ବନେ ବନେ ବୋଲି ବୁଲି ପୁଣି
ସାଥିହରା ପକ୍ଷୀ ସାଜି ।
ଏହାହିଁ ମୋହର କାମନା
ଅନ୍ତର ତଳୁ ଉଚ୍ଛୁଳେ ରୁଦ୍ଧ ବେଦନା ।



## ବିପ୍ଳବ

ଉନ୍ମଦୀ ଉଦ୍ଦାମୀ ଉଦ୍ଧତୀ
ବିପ୍ଳବର ଭୀମ ବାତ୍ୟା ଉଠ
ସମାଜର ବୁକେ ଢାଳ ଧୂଳି କ୍ରୁଦ୍ଧ ।
ଭାଙ୍ଗ ତୋ ଗଳାରେ ତମ
କୋମଳ ବାହୁ ଅର୍ଗଳି
ବନ୍ଧୁସାରା ପିନ୍ଧାଇଲ
ଯେଉଁ ଲୁହାର ଶୃଙ୍ଖଳ

ମୁକ୍ତର ଅଦ୍ଭୁତ ଚେଷ୍ଟା
ତାର ହୋଇଛି ବିଫଳ
ଖାଲି ତକ୍ତ ହିଂସାରେ ସେ
ଜାଳେ ତୀବ୍ର ଦାବାନଳ ।
ଝିଂଗୁ ସଖି ଆମେ ବେନି
ଗୁହିଁବା ତାକୁ କପାଇଁ
ଦହନ ବେଦନ ଅମ ପଣେ
ବନ୍ଧୁ ଜାଣେ ନାହିଁ ।
ପଦ୍ମ ସଖି ବେନି ଓଠ
ଅଙ୍କ ମିଳିଲ ସଙ୍ଗୋରେ
ଲୁଟିଲ ପୂତନା-ବନ୍ଧୁ—
ପ୍ରାଣ ଶୁଷି ଦେବା ଦାରେ ।
ମୂଳ୍ୟ ଛଠର ଜଣି
ଜାଳିବା କ୍ଷୁଧୀତ ନାଁ
ପଣ୍ୟେ ଅନନ୍ତ କ୍ଷୁଧା
ଗର୍ଜି ଉଠେ, ଜଣୁ କଥଁ ?
ଭହୁଦୀ ଭହୁଦୀ ଭହୁଦୀ
ବଦ୍ଧୁବ ତଳେ, ଚାଲ ଯାଅ ସଖି ଗୋ
ମୋ ବୋଳେ ପ୍ରେମ ଭୋଳେ ଅଖି ମୁଦ ।



## ବ୍ୟର୍ଥ--ସଂଧ୍ୟା

ସଞ୍ଜ ଶେଫାଳୀ ମଞ୍ଜରୀଙ୍କ ସଖି
ନପାଇ ଭ୍ରମର ଦେଖା,
ଧାଙ୍କି ଗୋଧୂଳି ଗଗନେ ଜଳିଲ
ଅଙ୍କି ବ୍ୟର୍ଥ ଲେଖା ।
ଫେରିଲେ କପୋତ କପୋତୀ ବସ୍ତିରେ
ବିରହ ରାଗିଣୀ ଗାଇ,
କାହିଁ ଗଲ ସଖି କାହିଁ ଗଲ ତମେ
ଦେଖା ଯେ ତମର ନାହିଁ ।
ଏଇ ବେଳେ ଏଇ ସରସୀ କୂଳରେ
ରଚିଯାଅ ନାଟ ଖେଳ
ଚୁମ୍ବନ ତୃଷ୍ଣୀ ତମେ ସଖି ମେଲେ ଆସି
ଭଲ କଥାଁ ଅଙ୍କ ଦେଲା ।
ପ୍ରେମ ଗୃହାର୍ଣ୍ଣିର ଗୋପନ ଭାଷାରେ
କହୁଥିଲ ମତେ ଯାହା
ନିଷ୍ଠୁର ପାଷାଣ ବୁଝିଅଁ ନ ଜାଣେ
ଜାଣେ ଖାଲି ମୋର ହୃଦ ।
କଳ ଅପବାଦ ଅଙ୍ଗେ ଭ୍ରମର
ଦେଲକି ଅଶନି ବ୍ୟଥା
ସାଥିହରା ପକ୍ଷୀ ସମକି ଫେରିବ
କହ ସଖି ପଦେ କଥା ।



## ବ୍ୟଥିତ-ହିଆ

ସଉରଭ କଂପା    ଭସି ଅସେ ଅଳି
    କୋକିଳ କୂଜନେ କାଁ
ଜ୍ୟୋସ୍ନା କପାଇଁ    ବହୁଏ ରଜତ
    ନାହିଁ ଯେବେ ମୋର ପ୍ରିୟା ।
ନିଭିଅସେ ମୋର    ଅଶାର ପ୍ରଦୀପ
    ନିରାଶା ବାତ୍ୟାଘାତେ
ତଥାପି ଗୃହେଁ ମୋ    ଅନ୍ତର ତନ୍ତ୍ରୀ
    ଝୋଜିବ ପ୍ରାଣ ପାଛେ ।
କବି କଳ୍ପନା    ନଦୀ ସମ ଯିବ
    ବନ୍ଧୁର ପଥ ଠେଲି
ପ୍ରେୟସୀ ପୁଣ୍ୟ    ପ୍ରେମ ପୟୋଧି
    ଜଳେ ଡୁବିବାକୁ ଖାଲି ।

\+ + +

ସୁମନ ଲୋ ତୋର    ସଉରଭେ ଅଜ
    ପାଏ ପ୍ରିୟା କେଶ ବାସ
କୋକିଳ ହେ ତମ    କୁହୁଗାନେ ଶୁଣେ
    ମାନସୀ ମଧୁର ହାସ ।
ଜ୍ୟୋସ୍ନା ତମର    ଅଙ୍ଗୁ ଉଛୁଳେ
    ପ୍ରେୟସୀ ବଦନ କାନ୍ତି
ଦେଉ ଯୋଗ୍ୟ ବୃଣି    ସବୁ ଅକାତରେ
    ଚାଲ କାହିଁ ମୋର ସାଥି ?
ସଉରଭ କାହିଁ    ନଦିଏ ଉତ୍ତର
    କୋକିଳ ହୋଇଲା ତୁନି

ଜ୍ୟୋତ୍ସ୍ନା ହେଲ ତ    ମୂଢ଼ ଏତବାରେ
ମୋର ଅନୁରୋଧ ଶୁଣି ।
ଜଗତ କି ସତେ    ହେଲ ନିରଦୟ
କି ଲଭ ଏବେ ସେ ପ୍ରାଣେ
ହା, ହା ! ମନ୍ଦ ହୃଦ    ଜଳି ଯାଉ ଅଳ
ନିରଶା ନିଦାଘ ଦାଣେ ।



## ଯୌବନ—ରଥ

ଯଉବନ ଥର ଉଲ୍ଲାସମୁଖୀ-ବାଷ୍ପୀୟ ସ୍ୟନ୍ଦନେ
ଲକ୍ଷ୍ୟହୀନ ପଥେ ସଖି ଛୁଟିଥିଲେ ଦେନି
ଦେଖିଥିଲ ମୋହ ନିଶା ନୟନେ ନୟନେ
ଘାରିଥିଲ ତନ୍ଦ୍ରାନନ୍ଦ ପଲକ ଉଲାଙ୍ଘି
ଚଳମାନ ସେହୁ ରଥ ଗବାକ୍ଷର ପଥେ
ଦୂରବନେ ଆଶା ତରୁ ମାନୁଥିଲ ଉଞ୍ଚି
ଦେନି ଅବସୁବ ପାଶେ ସମୀରଣ ନେତ୍ରେ ତେଜ
ପ୍ରୀତିଫୁଲ୍ଲ ସନ୍ତରଙ୍ଗ ପାଉଥିଲ ଫୁଙ୍କି
ଗୁହିଁଲି ଏ କାଳେ ସଖି ଭାବ ପଡ଼ା ମେଲି
ଅଚିହ୍ନା ହେଲେବ ଦେନି ଦେଉଁ କୁହୁକରେ
ତନ୍ଦ୍ରାଳସ ଭାମ ଅଖି ଯନ୍ତ୍ରେ ଗଲ ଖୋଲି
ଉଚ୍ଛୁଳିଲ ହୃଦ ମୋର ଅଜଣା ହୁଲ୍ଲୋଳେ
ଶିହରିଲ ଅବସୁବ ଚମକିଲ ସ୍ଥତ
ଠାଣି ଯୁଝା ନ ପାରିଲି ଫେରାଇ ନୟନ
ଦୁହେଁ ମିଶି କାଟିବାକୁ ମହାମୋହ ସୂତ

ପକ୍ଷିର ଅକୁହା ଭାଷା କହୁ ଦେଲ ତମ
ସହସା ମନ୍ଥର ହେଲ ରଥ ବାତ୍ୟା ଗତି
ଭାବଥିଲି ଶେଷ ହେବ ଲକ୍ଷ୍ୟହୀନ ପଥ
କିନ୍ତୁ ନ ରହୁ ସ୍ୟନ୍ଦନ ହାୟ ରୂପବତି !
ଟାଣି ନେଲ ବଳେ କିଏ କହ ହେ କହତ ।



## ପ୍ରୀତି

ଛୁଟିଛି ବାଷ୍ପୀୟ ରଥ ମାରି ଝଡେ ପିଟି
ଜଳଥଳ ଭେଦ ତାର ଯାଏ ପିଟି
ଫୁତ୍କାରେ ଜଗତ ଗାଲି ଧୂମ୍ର ସୃଷ୍ଟି ସୃଷ୍ଟି
ଉଦ୍‌ଗାରେ ଅନଳ ଖଣ୍ଡ ଝଡେ ଛାଣି ଛାଣି
ଯାତ୍ରୀ କେତେ ଦେଶ ଦେଶୁ ଧରି ନାନା ବେଶ
ବସନ୍ତ ଓହ୍ଲାନ୍ତି ନିତ ନାହିଁ ତାର ଶେଷ
ନାହିଁ କିଛି ଜାତି ଧର୍ମ ନୀଚ ଉଚ୍ଚ ଭେଦ
ମନେ ତାର ନାହିଁ ତଳେ ଆନନ୍ଦ ବିଷାଦ
ବକ୍ଷେ ଯିଏ ଦେଖି ନିଏ ରୂପର ମାଧୁର୍ଯ୍ୟ
ପ୍ରକୃତିର ମଞ୍ଜୁଳ ବକ୍ଷସ୍ଥ ମହତ୍ତ୍ୱ
ଶେଷ ହୁଏ ଯାତ୍ରା ଯାର ଗୃହ ଯାଏ ଥିର
ନିଜ ପଥେ ଛୁଟ ଚାଲି ଭବିଷ୍ୟତ ଚାଲି
ଯାତ୍ରୀ ଥିଲ ପ୍ରିୟେ ମମ ଯଉବନ ରଥେ
ଗଲ ଚାଲି, ଦୁଃଖ କିଆଁ ଫେରିବ ଏ ପଥେ ।



## ବରଣ—ମାଳା

ଭାରତୀ ତପସ୍ୱୀ ନଭେ ଭ୍ରମେ ଖଣ୍ଡମେଘ
ଉତ୍ତୁଙ୍ଗ ସମୀର ବହୁ ବଢାଏ ତା ବେଗ
ରୂପେଲି ଗୃହିଣୀ, ତାର ଅଙ୍କେକେ ସରଣୀ
ପଥ କହେ ଭ୍ରାମ୍ୟମାନ ତରଙ୍ଗ-ଓଷିଣୀ
କୋଟିତସ୍ ବରମାଲ୍ୟ ଦେଇ ତାର ଗଳେ
ଓାଷ୍ଟେଟି ନଅନ୍ତ୍ରି, ସେପେ ନିଜ ପଥେ ଚଳେ
ଗୃହେଁ ନାହିଁ ଥରେ ସୁଦ୍ଧା ଦେଖଣି କମଳେ
କୋଟି ତସ୍ ରୂପବତୀ ସଜାଇ ସରମେ
ଜଗତେ ଜାଣେନା କେଣେ କିଏ ତା ମାନସୀ
ବଣି ଅଛି ହୃଦୟା ତାର କଳୁଷେ ରୂପସୀ
ଗୃହୁଁ ଗୃହୁଁ ସ୍ନେହେ ଏକ ତାରକାର ପାଶେ
ହାୟ ! ହାୟ ! ମିଳିଯାଏ ମେଘଟି କି ଆଶେ
ତେସନ ତୁମରେ ପ୍ରିୟେ ଗୃହେଁ ମିଳିବାରେ
ନିର୍ଦ୍ଦୟ ଉପେକ୍ଷା ସତେ କହିବ କି ମୋତେ ?



## ପ୍ରିୟା—ଛଳନା

ଜ୍ୟୋତ୍ସ୍ନା ସାଗରେ ଉଠେ ରୂପର ଲହରୀ
ତସ୍ ପୂରେ ବେମାଞ୍ଚିତ ନିଶୀଥ ବଲ୍ଲରୀ
ତରଙ୍ଗ ବାହୁକ ବାବେ ଉଠେ ଜଉ ନଭେ
ଉଚ୍ଛୁଳେ ଗଗନ ଗାଙ୍ଗ ପ୍ରିୟାଂପ୍ରିୟା ରବେ
ତନ୍ତ୍ରାତୁର ନିଦ ଭରେ ଉଠେନି ପଲକ
ମିଥ୍ୟା ଯାହା ସତ୍ୟ ଭାବ ହୁଏ ସେ ପୁଲକ ।

ଏ କ'ଳେ ଶୁଭିବ ଅତି ଧୀରେ 'ସାଥି ସାଥି' ।
ମନେ ତାର ଉଚ୍ଛୁଳିବ ମୋହମୟ ସ୍ୱପ୍ନ ।
ଉତ୍ତ୍ୱାର ଆକାଶୁ ଆସେ ଆସିବ ଭୂତଳେ
ନାହିଁ ଛିଦ୍ର ଆନ ଏକ ଡାକେ ତାରେ ଛଳେ
ଏକାଳେ ଆକାଶ ଏକ ଶୁଭିବ ଚଞ୍ଚଳ
ଜାଣି ନାହିଁ ସେପେ ଏହା କ୍ରୂର ବ୍ୟାଧ ଛଳ ✽
ସେଥିପାଇଁ ଗୋ ପ୍ରେୟସି, ସନ୍ଦେହ ମୁଁ କରେ
ତଥାପି ସିକ୍ତ ମୋ ଆଖି ତପ୍ତ ଲୁହ ଜଳେ ।

✽ ବ୍ୟାଧଗଣଙ୍କର କାହୁକ ଶିକାରର ଅବଲମ୍ବନରେ ଲିଖିତ



## ଦେବତା

ପ୍ରେମ ଏକା ସତ୍ୟ ଭବେ ସତ୍ୟହିଁ ଦେବତା
ଶୁଣିଛି ଯେତେବେଳେ ହୃଦ ଭରେ ନୀରବତା ।
ପ୍ରେମ ନାମ ଶୁଣି ଆଜି ହୁଏ ଅହମିକା
ମନ ନାଟ୍ୟଶାଳେ ଯୋଟେ ଘୃଣା ଯବନିକା
ସତ୍ୟ ବୋଲି ଅଛି କିଛି ଅଖିଳ ସଂସାରେ
ଭାବେ, ଭାବନାର ପାପ ପୁଣ୍ୟ ଯାହିଁ ତଳେ ।
ତେବେ କାହିଁ ଦେବତାର ସତ୍ତା ସାର୍ଥ ବନ୍ଧେ
ବିଶ୍ୱାସେ ମାନବ ଖାଲି ଭକ୍ତେ ସତେ କାହିଁକେ ?
ଦେବତା ଭାବନା ପୋଷି ପୂଜେ ସେ ପାଷାଣ
ସତ୍ୟ କହୁଁ ଦେବ ସେଥେ ନାହିଁ ତାର ପ୍ରାଣ

ମିଥ୍ୟାରେ ଏସବ ସଦା ଭୁଲିବ ନ ଧର୍ମ ।
ସତ୍ୟ ନ ଜଗାଲେ ତାର ସ୍ୱପନ ପ୍ରସଙ୍ଗ ।
ତମେ ସଖୀ ବତାଉଛ ଏବେ ସତ୍ୟ ମୋତେ
ତମେହିଁ ଦେବତା ଏଣୁ ହୁଅ ମୋ ପରତେ ।



## ଘୂର୍ଣ୍ଣନ

ଧରାପୃଷ୍ଠରେ ଧନ୍ୟାନଶି ଋତୁ ଚକ୍ରପାକେ
ଅନୁକୂଳେ ନିତ ନିତ ଘୂରୁ ଚକ୍ରବତ
ଏହି ମହା ସନାତନ ବନ୍ଧନର ପାଶେ
ଝଡ଼-ବାତ୍ୟା-ବାଧା-ବନ୍ଧ ତରଇ ମିନତ ।
ଦୁର୍ବାସା କଟାକ୍ଷ ଜିଣି ଗ୍ରୀଷ୍ମ ଆସେ ଭବେ
ବରଷା ଭୂଷାଇ ଦିଏ ସଲିଳେ ସଂସାର
ଶରତ ଶେଫାଳି ଫୁଲ ହସେ ସଞ୍ଚରଣେ
ହେମନ୍ତ ହିଲ୍ଲୋଳେ ଥରେ ବସୁ ଚରାଚର
ଶିଶିର ଶିକର ଅଶ୍ରୁ ବୋଳେ ଶୀତରଣ
ବସନ୍ତ ବଣ୍ଟଇ ଦିଏ ସୁମନ ସୌରଭ ।
ଏ ନୀତିର ନାହିଁ କେବେ ପର ବରତନ
ଧରାପୃଷ୍ଠେ ଋତୁ ନିତ ଘୂରି ଭ୍ରମେ ଭବ
ହେଲେ ମୁହିଁ ତମ ପ୍ରୀତି ଆନ ଭାବେ ମୋତେ
ଏକି ଜଗତ ନିୟମ କହ ସଖିବାରେ ?



## ପ୍ରେମ—ଦୋଳି

ସେ ଦିନ ଗୋ ପ୍ରାଣ ପ୍ରିୟା ଝଘଛ ଗୋପନେ
ଦୋଳୁଥିଲେ ପେଣ୍ଡି ଖେଳ ଭଙ୍ଗିଛ କି ମତନ ?
ପ୍ରଣୟର କୁଞ୍ଜେ ସାଜ ପ୍ରୀତି ଫୁଲଦୋଳି
ଦୋଳୁଥିଲେ ଦହେଁ ଅଙ୍ଗେ ମୋହି ଟୁକି ବୋଳି
ଅଶାର ବସନ୍ତ ଗୃହ ହସୁଥିଲା ଧିରେ
ସୁଫଳତା ସମୀରଣ ବହୁଥିଲା ଧୀରେ
ଏକପାଶେ ସମାଜର ପୂତି ଭଇରବ
ଅନ୍ୟପାଶେ ଥିର ପ୍ରେମ ନନ୍ଦନ ସୌରଭ
ତୁମେ, ଅମ ପ୍ରେମ ଦୋଳି ଅର୍ଦ୍ଧବୃତ୍ତାକାରେ
ଖେଳୁଥିଲା ମଝି ବେଗେ ବାତ୍ୟା ପରକାରେ
ଭଇରବ ଗନ୍ଧେ ନାସା ରୁଦ୍ଧ ହୁଏ ଥରେ
ନନ୍ଦନ ସୌରଭ ବାଞ୍ଛ ଥରେ ହାସ ଝରେ
ଏ କାଳେ ଗୋ ଦୋଳିଗୋଟି ଚୂର୍ଣ୍ଣ ହୋଇ ହାୟ
ସମାଜର ଭଇରବେ ଭସିଗଲା ଲୟ ।
ଶାନ୍ତି ଲୋଭି ପକ୍ଷି ହେଲ ବନ୍ଦିନୀ ଖାମ୍ବରେ
ନନ୍ଦାମୀରେ ଭୁକ୍ତି ପକ୍ଷି ଛମ ଲାଗି ଝୁରେ ।



## ରଣ—ସଜ୍ଜା

ମୋ ବୁକେ ବିରହ-ତପତ ଲୋତକ
ପୂରିଲ ଗଢ଼ିଲ ଅକାଶ ଯାନ
ପୁଲକ ବହ୍ନିରେ ଛୁଟାଇଲି ତାକୁ
ଗତ ରାତ ସଖି ତୁମେତ ଜାଣ ।
ବ୍ୟଥା ବୋମା ଗାଲି ଭରି ଅଛି ତହିଁ
ଅଭିଯାନ ତାର ତୁମରି ପାଇଁ
ଜଗତେ ଅନଳ ଲଗାଇ ଖେଳିବ
କାହିଁ ତମେ ପ୍ରିୟା ଅଛ ବା କାହିଁ ?
ଯଦି ସଖି ତବ ନ ପାଇବ ଦେଖା
ନିଜେ ଜଳି ନିଷ୍ଠେ ଜାଳିବ ଧରା
ଲୋହିତ ଲହରେ ଅବଗାହି ମୋର
ପ୍ରାଣ ପକ୍ଷୀ ତୁନି ହୋଇବ ପରା ।
ଭସ୍ମ ଶିରେ ସଖି, ରଣର ଅଳସ
ଖେଳିବାକୁ ଗାଲି ତୁମରି ସାଥେ
ସାରା ସମାଜରେ ଉଡ଼ାଇ ଦେବ ଗୋ
ମହା ଅଟ୍ଟହାସ ପ୍ରଳୟ ବାତେ ।

---

## ଅଭିଯାନ

ତୁଚ୍ଛ ଜଗତ ବନ୍ଧନ ଛେଦ
ଅଭିଯାନ ଆଜି ରଚ ଗୋ ସଖି !
ଶତ୍ରୁ ନିହତ ଜୀବନ କାମନା
କଟି କଟି ଯାଉ ପ୍ରାଣ ପକ୍ଷୀ ।
ଅମ ଅପବାଦ ଯୁଦ୍ଧ ଦାରୁଣ
ଦୁନ୍ଦୁଭି ସମ ଜଗତେ ବାଜେ

ନିଧା କବର ଟିକ ସଖି ଗୋ
ରାଜପଥେ ଅସ୍ତ ସମର ସାଜେ ।
ବ୍ୟଥା ବନ୍ଧୁକ ବୁକୁରେ ତମର
ଗଗନ ଫଟାଇ ଗର୍ଜି ଉଠୁ
ଛତ୍ର ଲୋଭର ବନ୍ତ ବାୟୁ ସମ
ସସାଗର ଧରା ପ୍ଳାବି ଛୁଟୁ ।
ମୁହିଁ କି ବେଶର ସ୍ୱପ୍ନ ଭୂଷଣେ
ରୁନ୍ଧିବି ପ୍ରେୟସୀ ତମର ପଥ
ଓଢ଼ଣା ଓହ୍ଲାଇ ଅସ ସହଚର !
ସହଚର ବନ୍ଧୁ ଧର ମୋ ହାତ ।



## ଗୁହିଁବା ହେତୁ ଯିନା—

ସୁନାର ଭରତ ବୋଲି ଭଜଡଲେ ଛାତ,
ବୋହୂର ନାହିଁକ ଲଜ୍ଜ ଜିବନଙ୍କ ଭଟି ?
ସୁଧାର ସାଗର ବୋଲି ଡୁବିଲେ ଗୋ ହାୟ
ନଯିବଙ୍କ ପ୍ରାଣ ପକ୍ଷୀ ଉଡ଼ି ଛାଡ଼ି ଯାୟ ?
ସୁଦନୀ ଆଶାରେ ଗୁନ୍ଦ ଧରିବାକୁ ଗଲେ,
ଯିବନଙ୍କ ମିଳ ସଖି ଅଙ୍ଗ ପଲେ ପଲେ !
ପ୍ରୀତି ଯଦ ପ୍ରାଣ ଭବେ ବିରହେ ତାହାର
ମାନବ କି ଯିବନାହୁଁ ମରଣ ଦୁଃଖର ।
ତମେ ଯଦ ଭାବ ସଖି ପ୍ରେମହୁଁ ସକଳ
ରଖିଥାନ୍ତ ପ୍ରେମ ମୋରେ ପୁଷ୍ପର ଅନ୍ତର ।
ଯାଉଥାନ୍ତ ଯେବେ ଛିଡ଼େ ତମର ଅଳସ

କୋଣେ ଲୁଚି କହୁଥାନ୍ତି ବଚନ ସଦସ୍ୟ
ସରସୀ ନେଉଁଟା ପଥେ ମିଳଣ ଯେବେ ହେବେ
କଣ୍ଠୁହଁ ମୋ ଦଗେ ଯତ୍ନ ହୁଅନ୍ତି ଗୋ ତେବେ ।
ସ୍ନାନ ବେଳେ ସରସୀରେ ମିଶିଗଲେ ଥରେ
ରଦଚେ ବସନ ଭିଡ଼ ନ ଗୃହନ୍ତି ମୋରେ
ତେବେ ସଖି ନଥାନ୍ତା ଗୋ ଏତେ ପରମାଦ
ସୁଖୀଜାଣେ ନ ପୋଡନ୍ତା ବେଦ ବିଷାଦ ।
ଗୃହିବା ହେତୁ ପିଣା ଯନ୍ତ୍ର କରୁ ଅଧିକା
ସମାଜ ପାଷାଣ ଭୂଲେ ହେଲି ଅହଲ୍ୟା ।



## ଅଭିସାରିକା

ଚଳେ ଚପଳ ଚପଳା ଖେଳ, ଗରଜେ ମେଘ
ବରଷା ବାରି ଯଥାର ମାଡ଼, ବଢ଼ାଇ ବେଗ ।
ନିର୍ଘଣ ଭାବେ ସରଣୀ ଢାଙ୍କେ, ଦୀପାଳୀ ଜାଳି
ଡ଼ାକେ ପଡର, ମର୍ମର ସ୍ୱର ମାରୁଣ ତାଳି ।
ତଇତ ନିଶା ପବନ ମିଶା, ପ୍ରେୟସୀ ମୋର
ଚରଣ ଗୃଲେ ପ୍ରଣୟ ଭୋଳେ, ପୀରତ ଘୋର ।
ଅଞ୍ଚଳ ଭୁଞ୍ଜ ନମ୍ରିତ କଞ୍ଜ, ଚୌଦିଗେ ଗୃହେଁ
ଫିଟଇ ଗଣ୍ଠି କବରୀ ଯଦ୍ୱା ସରଣୀ ଭୁଇଁ ।
ପଣତ ଛାଇ ଟାଣି ସମୀର, ପଚ୍ଛରୁ କ୍ରମେ
ଢାଙ୍କି ସେ ଧରି ଟାଣି ଅଞ୍ଚଳ, ଜାଏ ସରମେ ।
କନକ ଗାଲେ ସ୍ୱେଦବିନ୍ଦୁ ଜାଲେ, ପ୍ରୀତି ବକୁଳ
ପ୍ରେମର ଝର ନୟନୁ ଗଳ, ବହେ ଦୁକୂଳ ।

ଅବଳ ମନ ସ୍ୱବଳ ସମ, ସଦାଚ୍ଛନ୍ନ ସ୍ମୃତିରେ
ମେଘ ଗର୍ଜନ ବିଦ୍ୟୁ ସ୍ପନ୍ଦନ, ଛଳେ ନ ଡ଼ରେ
ବେବେହେଁ ମୁହିଁ ନୟନ ଛୁଇଁ, ପ୍ରିୟାବେ ମୋରେ
ଏମନ ବେଶେ ଦେଖିନ ଲେଶେ, ସନ୍ଦେହ ଘୋର
ଦୁର୍ବଳ ମନ ବା ଅଭିଯାନ, ରଚଇ ବାଳ—
ସମାଜ ମୁଣ୍ଡେ, ଦେବାକୁ ବୃଦ୍ଧେ, ମୋ ବରମାଳ

## ଅଭିସାର—ଅପେକ୍ଷା

ସେ ତଥି ପର୍ବ ଅଜ ଲଗି ମୁଁ ଥିଲି ଯାଗି
ଅଣାସ୍ଥି ନୟନରେ ତା' ଅଭିସାର ଲଗି ।
ଦଶ ଇନ୍ଦ୍ରିୟ ମୋର ତା ପ୍ରୀତି ମହା ଦାନେ
ଜାଣିଥେ ଗୃହିଁ ଥିଲେ ଅନ୍ତୁଳିତ ପର୍ବଣେ ।
ଭାବନ୍ତୁ ସଞ୍ଚରଭ ସମୀରେ ଅସେ ଭରି
କି ଆଶା ପରଶେ ବା ବୁକ ମୋ ଯାଏ ଥରି ।
ନିଭନ ନିଶିଥର ଝଂକାର ସ୍ୱର ଶୁଣି
ଚମକେ ମୁହିଁ ତାର ନୂପୁର ନାଦ ମଣି ।
ଲୁଚଲେ କାଠିଚିଏ ପଡ଼ିଲେ କାହିଁ ଝଣ୍ଡ
ତା ପାଦ ନାଦ ବୋଲି ଗୃହେଁ ମୁ ଉଠିପଡ଼ ।
ନିଥର ଗଗନରୁ ଅନାଇଁ ତରିଚିଏ
କି ଭାବ ମୋତେ ଦେଖି ମୁରୁକି ହସି ଦିଏ ।
ସମୀର ଥିର ଥିର ଗବାକ୍ଷ ପଥେ ଅସି
ବେତେ ଯେ ଖିଅଲରେ ଯାଏ ମତେ ପରଶି ।
ମୋହର ଅବରଣ ବାତୁକଟିଏ ଦେଖି
'ଠୋ' କିନ୍ତୁ ଦେଲ ହସି କ୍ଷଣେ ମତେ ନିରେଖି ।

ଏହୃତା ପତଙ୍ଗ'ପ୍ରେ ସରମେ ଗଲି ପଡ଼ି
ଅବଶ ଆଖି ମୋର ଆସିଲ ପଡ଼ି ପଡ଼ି
ପୃଥିର କଳପନା ପଡ଼ିଲ ଅସ୍ତେ ଭାଜି
ଅପେକ୍ଷା ଉପେକ୍ଷା ରେ ପରିଣତ କି ଆଜି ?



## ପ୍ରାପ୍ତ—ପତ୍ର

ଏମନ୍ତ ଉତ୍ତର ପତ୍ରେ ମ ଇବାର ଆଶା
ନଥିଲା, ବର୍ଣ୍ଣିବା ପଇଁ ଦୟ ସଖି ଭାଷା ।
ରାଜରାଣୀ ତମେ ଆଜ ମୁ ଦୀନ ଭିକାରୀ
ପୂତ ତବ ତ୍ୟାଗ ଦେଖି ମନ ହୁଏ ଭାରି ।
ପ୍ରାଣ ମୋର ହଜେ କାହିଁ ଅଜଣା ସନ୍ଧାନେ
ସଂସାରର ସତ୍ୱ ଲୁଚେ ହୃଦ-ବିଜନେ ।
ନାରୀ ହୋଇ ତମେ ସନ୍ଧା ଦେଲ ଭବେ ଶିକ୍ଷା
କାହିଁ ଦେବେ ପୁରୁଷର ପଉରଷ ଦୀକ୍ଷା ?
କମଳର ବର ପାଣି ହୋଇ କିଏ ବସେ
ଦେଖି ନାହିଁ, ଦେଲ ପା'ରେ ବରମାଳ ନାସ୍ତେ ।
ଧନୀ ପିତା ଗୃହେଁ ଧନ ଶତ ଲକ୍ଷ କୋଟି
ନରଦମ୍ମା ପୋଷେ ସମ ନର ମଠେର କୋଟି ।
ଗର୍ବରେ ଅହଙ୍କାର ଦମ୍ଭ ଏ ଜଗତେ
ଧନୀ ପିତା ଦୀନ ମରି କାମ୍ୟ ମତରେ ।
ମାତ୍ର, ତମେ ସଖି କରି ଗର୍ବରେ ପ୍ରୀତି
ହଟେଶୁ ଦଟାଇଲ ଆଜ ଅଭିନବ ନୀତି ।
ନାହିଁ ଭୁଟେଁ ଆଜି ପିତା ସ୍ୱାର୍ଥପର ଧନ
କଣାଯାଏ ଗୁଣୀ ଗୁଣ ବଳମ୍ବରେ ଘସ ।

## ଷୀପ୍ତ ଭାବନା

ସରଗ ଶଶୀ ଜ୍ୟୋସ୍ନାରାଶି
ଢାଳିଥିବ ଧଳ ପୂନିଅଁ ନିଶା
ଫଗୁଣ ବାଆ ସୁରଭି ନାଆ
ବାହୁଥିବ ନିତ୍ତେ ପରାଗ ମିଶା ।
ମାନସୀ ମୋର ପ୍ରଣୟ ଭେଳା
ଢଳିଥିବ ଅଳ ପ୍ରିୟର କୋଳେ
ତା ପ୍ରେମ ହାସ ମଧୁର ରସ
ରଚିଥିବ ଅଦ୍ଧା ଗୃଦନୀ ତଳେ ।
ଭଳି କୁନ୍ତଳେ ପ୍ରେମ ବନ୍ଧେଲେ
ପ୍ରିୟତମ ତାର ବୁଲାଇ କର
କନକ ଗଣ୍ଡେ ଅନାଇଁ ଦଣ୍ଡେ
ଅଙ୍କିଥିବ ସତେ ଚୁମ୍ବନଗାର ।
ଅଧର ବେଳ ସମୟ ଜାଣି
ମିଶିଥିବ ପ୍ରେମ ଅଥୟେ ଥର
ଦର ମୁଦ୍ରିତ ବେଳିକ ନେତ
ଯାଉଥିବ ସୁଖସରଗ କଳି
ପ୍ରେମ ସୁଆତ ଉଦୟ ଛତ
ମିଶାଇ ନବୀନୁ ନୀବିଡ଼ତର
ପାଶୁପତର ତୀକ୍ଷଣ ଧାର
ବ୍ୟର୍ଥ-କରୁଥିବ ଅନଙ୍ଗ ଶର ।
ଏଭାଳେ ନଭେ ବଉଳ ରଡେ
ଚଳିଥିବ ଏକ ବିରହୀ ପକ୍ଷି
ଅନାଇ ପ୍ରିୟା ଥରାଇ ହୃଅ
ମୁଦିଥିବ ବେଳି କଜଳ ଅକ୍ଷି ।

ହୃଦୟ ଭୋର ନୟନୁ ଲୁହ
ଦେଇଥିବ ମେଲି ଗୋପନ ଦୁଅ
ନଥିବେ କେହି ପ୍ରିୟାରେ ଯାଇ
ପୋଛିବ ମୁ ପର ଲୋତକ ହାୟ ।



## ଭାବେ—ମୂର୍ତ୍ତି

ସେ ବେଳ ହୋଇଚି ପର
ପ୍ରେୟସୀ ବାନ୍ଧୁଥିବ କବରୀ
ଥିବ ତା ଆଗେ ମୁକୁର
ପ୍ରତିରୂପ ପଡୁଥିବ ଖର ।
ରଖିଥିବ ପାଶେ କେତେ
କମଳ, ନାଗେଣୀ ମଧୁକର
ସେ ବାସେ ଆକୁଳିତ
ଖେଳୁଥିବେ ଅପୂର୍ବ ଭଅଁର ।
ଦେଖୁଥିବ ପ୍ରିୟା ମୋର
ଏହି ଖେଳ ତାଙ୍କ ମନ୍ଦ ହାସ
ଭାବନାରେ ଅନୁକ୍ଷଣେ
ଫେକୁଥିବ ଖର ନାଶା ଶ୍ୱାସ ।
ଅଜାଣତେ ଚକ୍ଷୁ କୋଣୁ
ଝରୁଥିବ ନୟନ ସଲିଳ
ଭୁଲିଁ ପରେ ଆପେ ଆପେ
ଯାଉଥିବ ମିଳି ଅନାବିଳ ।
ଏ ରୂପ ଉପେକ୍ଷି ମୋର    ହୃଦନ୍ତ୍ରେ ପରି ମୂର୍ତ୍ତି ମୁକୁର
ମୋ ବୁକେ ତା ରୂପ ଧର    ପୋଛନ୍ତୁ ତାର ବ୍ୟଥା ଲୁହ ।

## ମୂଲ୍ୟ

ଦେଖି ରୁପା, ସୁନା, ହୀରା, ଗହଣା ବପଣି
କିଣିବାକୁ ଯେବେ ମନ ହୋଇଥିବ ଧନି !
ପ୍ରିୟ ସଙ୍ଗେ ଯାଇ ସଖି ପୁଚ୍ଛୁଥିବ ମୂଲ
ହୀରକ ମୁଦ୍ରିକା ପୁଣି ସୁନା ଗଳ ମାଳ
କଣ୍ଟେ ରୁଚିର ତମ ଉଠିଥିବ ଶିହରଣ
ଭାବ ଦେଖି କୁହୁକର ଅତ ପୁରାତନ
ସଞ୍ଚିତବ ହୃଦୟର ପ୍ରୀତି ଗନ୍ଧାଧର
ଚୁଣିଥିବ ଅଶ୍ରୁ ମୁକ୍ତା ବସନ, ଭୂତଳ ।
ଅକୁଳ ପ୍ରେୟସୀ ତମେ ନେବାକୁ ଯୋଡାଇ
ପୁଚ୍ଛିଥିବ ଗହଣାର ଖରଚ ଭୁଲାଇ ।
ଶୁଣିଥିବ ମୁଦ୍ରିକାଟି ହୋଇଲେ ବି ସାନ
ସୁନା ମାଳ ଠାରୁ ବହୁ ଗୁଣ ମୂଲ୍ୟବାନ ।
ସମାଜ ବିବାହ ଯଢ ଦଡହୁଏ ପ୍ରତେ
ଏମ ପ୍ରେମ ଗର୍ହ୍ୟାନ କିସଦା ଜଗତେ ?



## ବେଦନା

ଚଳ ଚଳ ଛନ୍ଦେ ନଦୀ, ବହେ ଛନ୍ଦ ସରଣୀ
ଛନ୍ଦ ଛନ୍ଦ ଢଳ ଢଳ, ଭାସି ଯାଏ ତରଣୀ ।
ଥର ଥର ବିକଶିତ, ଅଙ୍ଗେ ନବ ଯୌବନ
ଭର ଭର ଆଶା ଭାର, ଅଙ୍ଗ ବଡ଼ ଜ୍ୱଳନ ।
ବାନ୍ଧ ଉଠେ ହୃଦ ଏବେ, 'ପ୍ରିୟା ଗୋ ପ୍ରିୟା ମୋର'
ବାହୁ ଗୋ ଗୁଞ୍ଜଳ ପ୍ରିୟେ, ବେଦନା ଦେଇ ଘୋର ।

ବାରେ ବାରେ ନିଜ ବୁକୁ, ବିଦାରେ ନଖ ମୁନେ
ପ୍ରିୟେ ଗୋ ଥରେ ଦେଲେ, ଦେଖିବ ଭ୍ରମ ମନେ ।
ବେଦନା ରକତ ଧାରେ, ଲେଖେ ମୁ ତମ ନାମ
କୌଶଳେ କଟା ତହୁଁ, ପ୍ରଣୟୀ ଭାଲୁ-ଦାମ ।
ଗୁଣେ ଗୁଣେ ବଢ଼ିଯାଏ, ଅକୁହା ବୁକୁ ବୋଝ
ପ୍ରିୟେ ଗୋ ସହିବା ତାହା, ଅତୀବ ଦୁରୁହ ।
ଅଙ୍ଗୁଳି ମୁରୁଇ ଭେଟେଣ, ଭେଦ ଭେଦ ଛନ୍ଦାଏ
ଲୋହିତ ନୟନେ ନଭ, ତାରକେ ନିରେଖି ଯାଏ ।
ଜୀର୍ଣ୍ଣ ମୋ ପିଞ୍ଜର ତଳୁ, ବହଇ ଘନ ଶ୍ୱାସ
ସଖି ଗୋ, କହୁକି ପାରେ, ଦଏ ତା ଯେତେ ତ୍ରାସ ।
ସଜଳ ନୟନୁ ବହେ, ଲହର ଲହୁ ଧାର
ପୋଛୁ ମୁଁ ଦଏ ସଖି, ପଣତେ ବାର ବାର ।
କର ଦେଇ କପୋଳେ, ତଳପେ ପୋତି ରହେ
କହିଁ କହିଁ କାନ୍ଦେ ପ୍ରିୟେ, କଷଣ ଖାଲି ବଢ଼େ ।
ଜବାବ ଜଣାଏ ତାର, ନିଶୂନ ନୀରବତା
'ପାପ ପାପ' ପରିହାସ, ତାର ଗୋ ଗୁରୁବ୍ୟଥା ।
ଜଣେ ଯଦି ଭଲ ପାଏ, ଜଣକୁ ଦେଇ ମନ
ଦାରୁଣ କଷଣ ଘୋଟେ, କାହିଁକି କି କାରଣ ?
ମାନବକତାର ଏଥି, ନାହିଁକି ଅଧିକାର
ନର ହୋଇ, ସ୍ୱାଧୀନତା, ନାହିଁ କି ତହିଁ ତାର ?
ମାନବକ ମୁଁ ହଟେ ପ୍ରିୟେ, ସ୍ୱାଧୀନ ଥିଲେ ଆଜ
ଏତେ ଯେ ବେଦନା, ଶିତେ, ପଡନ୍ତା କାହିଁ ଭାଜ ?
ଭୂଦର ସରଣୀ ଗୃହୁଁ, ବସନ୍ତ ମୁହୁଁ କିଆଁ
ହୁଅ ମୋ କଣ୍ଠେ ନିବ, 'ପ୍ରିୟା ଗୋ ମୋର ପ୍ରିୟା' ।
ଲେଡକଧାର କର୍ପୀ ଦହନ୍ତା, ଝର ଝର

ବୁକୁଅଶା ହୃଅନ୍ତାକି, ଏସନ ତର ତର !
ଆଶାରେ ଜଗତ ଯିନା, ଅଜି ଗୋ ଅତଯାତ
ବଞ୍ଚନେ ଫଣୀ ତାର, ଢୋକବ ଧୂଳିଯାତ ।
ବିନା ବାଧା ବେଦନାରେ, ଯତ ବା ପ୍ରିୟ କର
ଧରଥା'ନ୍ତ୍ର କଥାନ୍ତା ଗୋ, ଏ ମହା ଶୋକସର ।
ତମ ଗୁରୁ ଧାନେ ଯିଜା, ମଣିତ ମୁହୁଁ ଅଜ
ତେମନ ବେଦନା ଦକ୍ଷେ, ବଜାୟୀ ଅଛୁ ସାଜ ।
ଏଣୁ ବୋଲେ ବାର ବାର, ବେଦନା ହେଜୁ ମୋର ।
'ପ୍ରିୟା ପ୍ରିୟା' ରହୁଥାଉ, ହୃଦ ମୋ ଥର ଥର ।



## ଶେଷ — ଆଶା

ଅଭି ଯଉବନ ଗଲ୍ପ ଯେବେ ପୁଣି ଅସିବ
ଶୀତେ ହେମନ୍ତ ଶେଷେ ବସନ୍ତ ଫୁଟିଲ ନାଚିବ ।
ଫୁଲ ଫୁଟି ଗଲେ ଝଡ଼ ନୂଆଁ ଫୁଟେ ତ
ଝାଡ଼ି ପରେ ନୂଆ ବାଟ କଲେ ଉଠେ ତ ।

ଗୋଧନ ଗୋଠକୁ ଯାଇ ସଞ୍ଜେ ଫେରଇ
ଗୋଧୂଳି-ପଥନ ପୁଣି ପ୍ରାତେ ଅସଇ ।

\+ + + +

ଶବ ମୋର ଶେଷେ ଯେବେ ହେବ ଦହନ
'ପ୍ରିୟା ପ୍ରିୟା' ଡାକୁଥିବ ହୃଦ କନ୍ଦନ ।
ଜୀବନ ନିଶାରେ ମନ ଥିବ ଅନାଇ
ମୃତ୍ୟୁପାରେ ମିଳନର ଘର ତୋଳଇ ।

ଆସିବ ମାନସୀ ମୋର ବେଶୀ ହୃଦୟ
ଶତାବ୍ଦୀର ବାସନାରେ ମନ ଉଷାଭ ।
କାମ୍ନାହୀନ ମାୟା ପ୍ରାଣ ମୁଦେ ନାଶିବ
ଚିର ନନ୍ଦନେ ମୋର ପ୍ରାଣ ହସିବ ।



## ନାରୀ !—ଜଡ ମୂର୍ତ୍ତି

ରକ୍ତ ମାଂସ ଗଠିତ ମାତୃରୂପି, ହେ ବିଶ୍ୱ ଅବଳା,
ଜନ୍ମର ବିଜୟ ମହତ୍ତ୍ୱ ବିକାଶ, ତୁମଠି ଏ ଧରା ।
ପଶୁ, ପକ୍ଷୀ, କୀଟ, ତୃଣ ଗାଏ ନିତି, ମାତୃତ୍ୱ କୀରତି,
ଜଗତର ଜଳପନା ଧ୍ୱନିଯୁକ୍ତ, ଅଶେଷ ଭକତି ।
ଯୁଗ ଯୁଗ ମିଥ୍ୟା ହେବ ଗଣା ଯାଉ, ଇନ୍ଦ୍ରୁପ ଦାରତା,
ଇତିହାସ ପୁରାଣ ଉଜଳେ ମୂର୍ତ୍ତି, ସ୍ତୁତି ଗୌରବତା ।
ଅବିଶ୍ୱାସ କରେ ମୁହଁ ଆଜଠାରୁ, ତାହାର ଅସ୍ତିତ୍ୱ,
ଜଗତରେ କହୁ ବୁଲେ ନାହିଁ ତଳେ, ଜୀଗଠେ ନାରୀତ୍ୱ ।
ଖାଲି ପ୍ରବଞ୍ଚନା, ଭରା ବିଡ଼ମ୍ବନା ।

ବରଚ୍ଛି ତାହାର ତାଲେ ଅକାତରେ, ଶ୍ଳୋକର ଅମୃତ,
ଲେଖିପାରେ ବସି ଦିନ ରାତି ମହା—କାବ୍ୟ ମେଘଦୂତ ।
ସାଜିପାରେ ବଇରାଗୀ ତେଜି ଧନ, ପୁତ୍ର, ଅଟ୍ଟାଳିକା;
ସମାଜର ତୃପ୍ତ ନୀତି ଶିରେ ଢାଳି, ତୀବ୍ର ଅହମିକା ।
ଅବିଶ୍ୱାସ କରେ ମୁହଁ ଆଜଠାରୁ, ତାହାର ଅସ୍ତିତ୍ୱ,
ଖାମ ଖିଆଲି କବିର ଏ ଯେ ଖାଲି, ଉଦ୍ଭଟ କବିତ୍ୱ ।
ଭାବେ ଶୂନ୍ୟ ପ୍ରାଣ ହୁଏ ମୂହ୍ୟମାନ ।

ତେଣୁ ହେ, ଅବଳା ଜାତି କରେ ନାହିଁ, ତମକୁ ମିନତି,
ଦଗ୍ଧ ମୋର ବୁକତଳୁ ଜେଉଁଜାଳୁ, ତୁମ୍ଭଙ୍କୁ ଭକତି ।
ଅତୀତର ଅଟ୍ଟାଳିକା ତଳେ, ଖୋଳଇ ସମାଧି,
ଦେଇଛନ୍ତି ପୋତାକୁ ମୁହିଁ 'ପ୍ରିୟା; ମାତା ?' ସକଳ ଉପାଧି ।
ମାତାର ଅଶୀଷ ଶିର ଘୃଣ୍ୟ ହେବେ, ଲୋଡ଼ା ନାହିଁ ତଳେ,
ପ୍ରିୟ ନାମେ ଦାବାନଳ ଜଳେ ଅଙ୍ଗ, ପଳେ ପଳେ ମିଳେ ।
ଗୃହେଁ ନିକ୍ଷେପିତ ପ୍ରାଣେ ମୋର ଧଳା—ଦେବ ନାସ୍ତି ଜାତି,
ଉପେକ୍ଷିତ ଜୀବନର ବାତ୍ୟାମୟ, ଅଟ୍ଟହାସେ ମାତି ।
ଛାଡେ ତିକ୍ତ ପ୍ରାଣ, ଲୋଡ଼େ ଅଭିଯାନ ।

କିନ୍ତୁ ମୁଁ ବନ୍ଦଇ ହେ ଅବଳା ଜାତି, ତୁମରି ଚରଣେ,
ଯେଣୁ ଦେଖେ କେତେ ଯେ ବିଚିତ୍ର କଥା, ତୁମ ସଂଗୋପନେ ।
ଦେଇପାର ପୁରୁଷର ମୁକତି, ବିମୋହନ ବାଟି,
ଭୁଲେ ଆପେ ଶ୍ମଶାନ ସମ ତମ ପଛେ, ହେଲେବି ଧୂର୍ଜଟି ।
ଭ୍ରାତୃ ପିତୃ ସ୍ନେହ ଡୋର କ୍ଷଣକରେ, ହୁଁକାର ତୁଟାଇ,
ଶାନ୍ତ ଲଭେ ନିଜ ପ୍ରାଣେ ଗୃହାଙ୍ଗନେ; ପ୍ରାଚୀର ଉଠାଇ ।
ଭଲବର ବର୍ଣ୍ଣମାଳା ନିଏ ଆପେ, ଜୀବନର ବର,
ସେଥିପାଇଁ ମଥା ମୋର ନଇଁଯାଏ, ଆପେ ଆପେ ନାରୀ ।
ଏଣୁ ଶତବାର ପଦେ ନମସ୍କାର ।

ଜେଉଁ କୋଟି ଶତାବ୍ଦୀର ଭଗ୍ନସ୍ତୂପ, ତମ ନିଦର୍ଶନ,
ପ୍ରକଟିତ ବାଲ୍ମୀକ, ବ୍ୟାସ ବଦନୁ, ତୁମରି ବନ୍ଦନ ।
କୈକେୟୀ ସ୍ତବ୍ଧ କୁଟିଳ କାମନାରେ, ତୁମରି କୀରତି,
ଧ୍ୱନିତ ଦୁନ୍ଦୁଭି ମମ ଆଜି ପୂଜା, ଫାଟାଇ ଧରଣୀ ।
ରୁମନ୍ଦୁରେ ଅକୂଳା ସୀତା ଲାଗି, ପ୍ରଚଣ୍ଡ ସମର,
ପ୍ରଳୟର ମୂର୍ତ୍ତିମନ୍ତ ମହା ବାତ୍ୟା, ଥରଇ ସାଗର ।

ପାଞ୍ଚାଳୀ ସଭାରେ ଜନ୍ମିଲା ଭାରତ-ଯୁଦ୍ଧ ବହ୍ନିଶିଖା,
ଦାବାଗ୍ନିର ଉତ୍କର୍ଷକ ଜାତ୍ର ଝଞ୍ଜା, ଦହନ ଦୀପିକା ।
ତେଣୁ ପଦେ ନାରୀ ! ଚେତରେ ମୁଁ କୁହାଇ ।
ବିପ୍ଳବର ବାତ୍ୟାଢୋଳେ ଯେଉଁଦିନ, ଥରିଲା ଭୂପୀଠ,
ନର ରକ୍ତେ ଉଛ ଅଟ୍ଟହାସ କଲା, ସେ ଦେଶେ ମୂଲ୍ୟ ।
ପୂର୍ଣ୍ଣ ପତ ପାଷାଣର ବକ୍ଷରେ, ଗର୍ଜିଲା ଅଶନି,
ରଣଦେହୀ ଉଚ୍ଚା ପିଠି ଥର ଥର, ଥରିଲା ଅବନୀ ।
ସେ ଦିନର ନାରୀ ଶକ୍ତି ଦେଖାଇଲା, ସବଳ ସାହସ,
ଅବଳାର ଅଲୌକିକ ଅଗ୍ନିଶିଖା, କଲା ସ୍ୱର୍ଗସ୍ପର୍ଶ ।
ଅବରୁଦ୍ଧା ଯେତେ ଭୂମିଯ ମହିଳା, ରଣ ଅଭିଯାନ,
ରାଜମାର୍ଗେ ଅବଗୁଣ୍ଠନ ବସନ, କଲେ ଦହନ ।
ତେଣୁ··ନତମୁହିଁ, ନାରୀ, ପଦଚୁମ୍ବଂ ।

## ପ୍ରିୟ ଉପହାର

ନବ୍ୟ ମୋ ଉପହାର

ଦେଖାବ ପ୍ରିୟ ହେ ସ୍ପନ୍ଦନ ହେବ, ଛୁଟି ତମ ଦ୍ୱାର ବାର ।
ନଥିବ ସେ ତହିଁ ଧନ ଦଉଲତ, ନଥିବ ହୀରକ ହାର
ନଥିବ ବସନ୍ତ ଡ଼ାକ ଡ଼ାକ ପିକ, ଥକିଥିବ ଦାଉ ଦାଉ ।
ବୈଶାଖ ଖରା ରହିଥିବ ସେହି, ଗ୍ରୀଷ୍ମ ଦହନଜ୍ୱାଳା
ଖାଣ୍ଡବ ସମ ଫାଲ୍‌ଗୁନୀ ବେଶେ; ନାରୀ ଏକ ଗୃହଶୀଳା ।
ଥକି ଯିବ ତମେ ନିଷ୍ଠୁରେ ପ୍ରିୟ, ଦେଖିଏ ମୋ ଉପହାର
'ବେଦନା' 'ବେଦନା' ବୋଲି ବୋଲି ତହିଁ, ପଢ଼ିଯିବ ବାର ବାର ।
ନକହିବ ପ୍ରିୟେ ମୋତ ହାନି ମତେ, ନ ଡେକାଦ ମୋର ସାଥି

ଦୀର୍ଘଶ୍ୱାସ କହୁ ଦେ ପ୍ରିୟତମ, ନଦେବ ବୁଝେ ମୋ କାନ୍ତ ।
ଜଗତ ଚେଳକୁ ମତେ, ତମେ ସ ା, ଦଉଛେ ଅଳପ ତୋଳ
ନାହିଁ ମୋର ପ୍ରିୟା ସାଥିହବା ମୁହିଁ, ବୁଝେ ବ୍ୟଥା ଭର ଜର ।
ଥିଲେ ମୋ ପ୍ରେୟସୀ ନକରନ୍ତୁ ସ ଖା, ତମ ପାଶେ ଏତେ ଅଳି
ତା'ଠୋଳେ ବଧନ ଲଗୁଛ ଦଅନ୍ତ୍ର, ଯାଅନ୍ତା ବେଦନା ସର ।
ଆହା ବୋଲ ମତେ ଓଦେ କହିବାକୁ, ନାହିଁ ପ୍ରିୟ ଅଜ କଏ
ଛୁଣ୍ଟ ଏ ଧନ୍ଦ ବେଦନା ନ ଜାଣେ, କର୍କଶ ଘାତ ଦଏ ।
ସଖା ଅନୁରୋଧ ବାର ବାର
ପଣ୍ୟ ତବ ହେବ ମୋ ଜୀବନେ
ଅମରର ଉପହାର ।



## ପ୍ରଣୟୀ—ମୃତ୍ୟୁ

ମୃତ୍ୟୁ ଯେବେ ଆସିବ ଗୋ ସଖି
କ ଦେବ ଉପହାର ତାରେ
ନେଇଛ ତ ସବୁ କିଛୁହିଁ ନରଖି
ଜୀବନ ମୋ ଦଣ୍ଡା ତମର ପଣତେ
ମନ ମୋ ହଜିଛୁ ତମ ପ୍ରେମ ପଥେ ।
ଅଜ୍ଞେୟ ଢାଳ ସ୍ୱେଦ ତମ ଲାଗି ବ୍ରତ
ନେଇଅଛ ବର ଆପ ତାର ଶେଷ ତଥି ।
ତେବେ, ତ୍ୟକ୍ତ ପ୍ରାଣ ପାତେ ବେଦନା ମଦସ୍ଥ
ନଯର ବନ୍ଧୁ ଏ ହେଲେ ଦହୁଅଛୁ ପୂର୍ଣ୍ଣ ।
ଶେଷ କାଳେ ଅଛୁ ଭବ ତାହାହିଁ ମୋ ଧନ
ମୃତ୍ୟୁର କଣ୍ଠକ ଦାନେ ଅଫୁଟା ସୁମନ ।

ମୃତ୍ୟୁ ଯେବେ ଅଙ୍କିବ ଚୁମ୍ବନ!
ତା' ଅଧରେ
ଦେବ ସ୍ନେହ ପାଏଟି କେବଳ
ସଦର୍ପେ ନିରଖି ।



## ଶେଷ ବେଦନା

ବେଦନା, ବେଦନା, ବେଦନା !
ଗୃହଶୀଳ ଏକ ବାଲିକାର ପ୍ରେମେ ଏତାହିଁ କି ଶେଷ ଯାତନା ?
ବୈଦେହୀ ବିରହୀ ରାମ ହୃଦୟେ ଏହିପରି
ଝର ଝର ଥିଲା ବହି ଲୋତକ ପରି ଝରି ।
କାନନ କାନ୍ତାର ପୂର୍ବ ଅକୁହା ବୁକୁ ବୋହି
ଡାକିଥିଲେ ଦାଶରଥି ବିରହ ଦୁରୁବହ ।
କାନ୍ଦିଥିଲେ ବୁଲି ବୁଲି ବନାନୀ ବୁକେ ବୁକେ
ପ୍ରିୟା ପ୍ରିୟା ! କହି କହି ଲୋତକ ଝରା ମୁଖେ ।
ସେ ଦିନ ଶକୁନ୍ତଳା ଦୁଷ୍ମନ୍ତ ବିରହରେ
ଭୋଗିଥିଲେ କି ଏକ ବେଦନା ବୁକୁ ତଳେ ।
ଥର ଥର ଥଇଥିଲା ଛାତିର ବ୍ୟଥା ଗୁଡ଼
ସୁପ୍ତ ପ୍ରଣୟ ଗୀତି ହୃଦୟେ ଥିଲା ମାତି ।
ତପତ ଅନଙ୍ଗ ଜାଳେ ବିଦାରି ନିଜ ବୁକ
କମଳ ପତ୍ରରେ ଥିଲେ ଲେଖି ସେ ଚିଠି ଏକ ।
ମୁହିଁ କି ସେପରି ନୁହେଁ ବିରହ ଭୋଗୀ ନର
ବୁକେ ମୋ ଉଠେ କି ନାହିଁ ବ୍ୟଥାର ପଞ୍ଜର ।
ମାତର କପାଳେ ମୋର ମିଳନ ଆଶା ନାହିଁ
କାନ୍ଦିବା ଛୁଟିବା ଏକା ମୋ ଭାଗ୍ୟ ଅଛି ଲେଖି ।

ଯାଚିନା ସିଂହାସନ ଧନ ଜୀବନ ମୋର ଭବେ
ପରଶ ମରତେ ଚାରୁ ବେଦନା ହା, ହା ! ରବେ ।

\+ + + +

ହରଷି ପରଶି ମୋର ଗଗନ୍ ଗୃହଁ ଗୃହଁ
ମିଳନ ମଲ୍ଲାର ତାନେ ବଣାଠି ଦେବ ବାଇ
ମୂର୍ଚ୍ଛ ଲଭତ ହୃଅ
ଅଙ୍କା ଅକାଶ ପଟେ ନାଚିବ ସବ ସବ ପ୍ରିୟା ପ୍ରିୟା ।



A maiden may sing of her lost love
But a miser cannot sing of his lost money.



# ଶୁଦ୍ଧି ପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪ | ୨୨ | ତାହାର ମୋ ପ୍ରେମ | ମୋର ପ୍ରେମ । |
| ୪ | ୨୩ | ଯେତକ ପାଥେୟ | ଯେତକ ମୋ ପାଥେୟ । |
| ୮ | ୧୧ | ଲଭଉ ଏବେ ଧସ | ଲଭିବ ଏବେ ଏଟସ । |
| ୧୦ | ୬ | ଶିହରନ୍ତା ଭାସୁ | ଦେଲେ ଢାଳି ମଥା । |
| ୧୧ | ୩ | ବଦନ | ବଦନା । |
| ୧୧ | ୧୩ | ଢାଳ | ଢଳି । |
| ୧୨ | ୭ | ବେଦନା | ବେଦନ । |
| ୧୪ | ୧୯ | ଧରଣୀ | ଧରଣୀ । |
| ୧୬ | ୫ | ମନ୍ଦର | ମନ୍ଦର । |
| ୨୧ | ୨ | ସଫା | ସଞ୍ଜ । |
| ୨୩ | ୮ | ଯୌବନ ଥର | ଯୌବନର । |
| ୨୩ | ୧୮ | ଚନ୍ଦ୍ରାଳୟ | ଚନ୍ଦ୍ରାଳୟ । |
| ୨୪ | ୮ | ତାର ଯାଏ ଫିଟି | ତାର ପଥ ଯାଏ ଫିଟି । |

